# ଆମେ ଏବେ କଣ ଲେଖୁଛୁ

ଅଧ୍ୟାପକ ଶ୍ରୀ ପ୍ରଫୁଲ୍ଲ କୁମାର ରଥ

ନିଜସ୍ୱ ପ୍ରକାଶନ : ଯାଜପୁର

Ame Ebe Kana Lekhuchhu

।। ଆମେ ଏବେ କଣ ଲେଖୁଛୁ ।।


Author :

Prafulla Kumar Rath

Lecturer,

S.C.S. College, Puri.

।। ରଚନା ।।

ପ୍ରଫୁଲ୍ଲ କୁମାର ରଥ

ଅଧ୍ୟାପକ,

ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ, ପୁରୀ



Published by :

Nijaswa Prakasana

Jajpur ( Cuttack )

।। ପ୍ରକାଶନ ।।

ନିଜସ୍ୱ ପ୍ରକାଶନ

ଯାଜପୁର, କଟକ

Ist Published on :

Vijaya Dasami

October, 1983

।। ପ୍ରଥମ ପ୍ରକାଶ ।।

ବିଜୟାଦଶମୀ

ଅକ୍ଟୋବର, ୧୯୮୩

Printed at :

Sri Printers

Dolamandap Sahi, Puri.

।। ମୁଦ୍ରଣ ।।

ଶ୍ରୀ ପ୍ରିଣ୍ଟର୍ସ

ଦୋଳମଣ୍ଡପ ସାହି, ପୁରୀ

Price :

Rupees Ten Only

।। ମୂଲ୍ୟ ।।

ଦଶଟଙ୍କା ମାତ୍ର

## ।। ସୂଚୀପତ୍ର ।।

।। ପୃଷ୍ଠା ।। ।। ମୁଖବନ୍ଧ ।।





ଗୋଟାଏ ପଟରେ ଗୃହଥାଏ ଯୁବ ଲେଖକ ସମ୍ମେଳନର କାମ । ବନ୍ଧୁ ପ୍ରସନ୍ନ ପାଟଶାଣୀ, ସଦାଶିବ ଦାସ ପ୍ରମୁଖ ଆମକୁ ସହଯୋଗ କଲେ । ରଘୁବାବୁଙ୍କ ମାର୍ଫତରେ ଆମେ ସହଚ୍ଛା ପାଇଲୁ ଗାଳ୍ପିକ ରାଜକିଶୋର ପଟ୍ଟନାୟକ, ଫକୁରାନନ୍ଦ, କୁଳମଣି ମହାପାତ୍ର, ମହାପାତ୍ର ନୀଳମଣି ସାହୁ ପ୍ରମୁଖଙ୍କର । ପତ୍ରିକା ପ୍ରକାଶ ପାଇଲା ।

ଜାତୀୟ ସଂହତି ରକ୍ଷା ନିମିତ୍ତ ପଚିଶ ଭାଗ ପ୍ରାନ୍ତୀୟ ସାହିତ୍ୟର ଅନୁବାଦ ଓ ପଚିଶ ଭାଗ ମୌଳିକ ଲେଖା ନେଇ ୧୯୭୩ ମସିହା ଜୁଲାଇ ମାସରେ 'ଅଧୁନା' ବଜାରକୁ ଆସିଲା । ଆମ ହାତରେ ତ ଧନ ନଥିଲା, ଥିଲା ଏକ ଦୃଢ ମନୋବଳ । ଦୁଇବର୍ଷ ଯାଏଁ ମାସିକ ଭାବରେ ପ୍ରକାଶ କଲୁ । ବିଜ୍ଞାପନ ଯୋଗାଡ଼ କରିବା କାମ ଆମ ହାତରେ ହେଲା ନାହିଁ । ବିଜ୍ଞାପନ ଛାପିଲେ ମଧ୍ୟ ପଇସା ମିଳିଲା ନାହିଁ । ଯୁଗଳ କିଶୋର ଦତ୍ତ ଓ ଦଶରଥ ସାମଲ ପ୍ରମୁଖ ବନ୍ଧୁମାନ ବିଭିନ୍ନ ଦିଗରୁ ସାହାଯ୍ୟ କଲେ । ଚନ୍ଦ୍ରମଣି ବାବୁ, ଦଶରଥ ବାବୁ ଓ ଅଚ୍ୟୁତା-ନନ୍ଦ ପତି ପ୍ରମୁଖଙ୍କ ସହ ମୋର ସମ୍ପର୍କ ମୋର ପିତୃଦେବ ଅଧ୍ୟାପକ ଜଗନ୍ନାଥ ରଥଙ୍କ ସମୟରୁ । ତେଣୁ ଏକ ସୁସଂହତ ଭାବରେ ଆମେ ପତ୍ରିକା ପ୍ରକାଶନରେ ଲାଗିଥାଉ । ଅର୍ଥ ସଂଗ୍ରହ ନିମିତ୍ତ ବାର୍ଷିକ ଗ୍ରାହକ ଚାନ୍ଦା ଆଦାୟ ଓ ନିଜେ କିଛି ପତ୍ରିକା ବୁଲାଇ ବିକିବା ଥିଲା ଆମର କାମ । ଯାଜପୁରର ଜନଗଣ ବେଶ ସାହାଯ୍ୟ କଲେ । ଯାହା ସାହାଯ୍ୟ ମିଳେ ତାହା ବ୍ୟକ୍ତିଗତ ସମ୍ପର୍କରୁ । ନ ହେଲେ ୧୫୦୦ ସ୍କୁଲକୁ ବାର୍ଷିକ ଗ୍ରାହକ ଚାନ୍ଦା ନିମିତ୍ତ ଅନୁରୋଧ କରି ପତ୍ର ଲେଖିଲୁ ସତ ମାତ୍ର ୧୫ଟି ସ୍କୁଲ ସହଯୋଗ କଲେ । ଅର୍ଥାଭାବରୁ, ପ୍ରେସର ଅସହଯୋଗରୁ ଆମର ପ୍ରକାଶନ ନିୟମିତ ହୋଇ ପାରିଲା ନାହିଁ । ପୁଣି ଡାକଘର ବାଲାଙ୍କ ଦୟାରୁ କେତେକ କ୍ଷେତ୍ରରେ ନିୟମିତ ପତ୍ରିକା ପହଞ୍ଚିଲା ନାହିଁ । ଚିତ୍ତରଂଜନ ପ୍ରହରାଜ ବୋଲି ଜଣେ ଯୁବକ, ଘର କିଷ୍ଟିନ୍‌କୋଇଲି ଅଞ୍ଚଳରେ ସେବା ମନୋଭାବ ନେଇ ଆଗେଇ ଆସିଲେ କଟକ ସହରର ଦାୟିତ୍ୱ ନେବାକୁ । ଆସିଲେ ହରପ୍ରସନ୍ନ ଦାସ । ୧୯୭୬ ଜୁଲାଇ ବେଳକୁ ମୁଁ ଆସିଲି ପାରାଦ୍ୱୀପ କଲେଜକୁ ଡେପୁଟେସନରେ । ପାରାଦ୍ୱୀପରେ ମଧ୍ୟ ଜନଗଣଙ୍କର ପରମ ଉତ୍ସାହ ଓ ସାହାଯ୍ୟ ପାଇଥିଲୁ । ଅଧ୍ୟାପକ ନରୋତ୍ତମ ଦାସ ଏହିଦିଗରେ ସାହାଯ୍ୟ କରୁଥାନ୍ତି । ଅଧ୍ୟାପକ ବ୍ରଜକିଶୋର ପଣ୍ଡା ଉତ୍ସାହ ଦେଉ ଥାଆନ୍ତି । ୧୯୭୮ ମସିହାରେ ମୁଁ ଗଲି ଭବାନୀ ପାଟଣା । ସେଠାରେ ସେତେବେଳେ

ଥିଆନ୍ତି ଡ଼ଃ ବଂଶୀଧର ସାହୁ, କମଳାକାନ୍ତ ପଣ୍ଡା, ନାଟ୍ୟକାର ପ୍ରଫୁଲ୍ଲ ରଥ, ଅଧ୍ୟାପକ ଭଗବାନ ଜୟସିଂହ । ସେଠା ଲୋକଙ୍କର ସହଯୋଗରେ ୯୮ ମସିହା ଯାଏଁ ଅଧୁନା ଚାଲିଲା । ଆଜ ତାପରେ ଚଳାଇବା ସମ୍ଭବପର ହେଲା ନାହିଁ ।

'ଅଧୁନା' ପ୍ରକାଶ କରିବା ପଛରେ ବିଭିନ୍ନ ସମୟରେ ବିଭିନ୍ନ ଆଦର୍ଶ କାମ କରିଛି । ପ୍ରେମଚନ୍ଦଙ୍କ ଯୋଗ୍ୟ ପୁତ୍ର ଅମୃତ ରାୟଙ୍କ ସମ୍ପାଦନାରେ ଦିଲ୍ଲୀରେ ପ୍ରକାଶ ପାଉଥିଲା "ନଈ କହାନିୟାଁ ।" । କମଲେଶ୍ୱରଙ୍କ ସମ୍ପାଦନାରେ ପ୍ରକାଶ ପାଉଥିଲା "ସାରିକା" । ଏହି ଦୁଇ ପତ୍ରିକାର ଆଭିମୁଖ୍ୟକୁ ମିଶାଇ ଆମେ ଆମର ଆଭିମୁଖ୍ୟ ପ୍ରସ୍ତୁତ କରିଥିଲୁ । ତା ଛଡ଼ା ସାହିତ୍ୟ ପତ୍ରିକାରେ ବିଭିନ୍ନ ଜ୍ଞାନ ବିଜ୍ଞାନର ସମ୍ବାଦ, ଅନୁଭୂତିର ବୈଚିତ୍ର୍ୟ ଆଦି ପ୍ରକାଶ କରୁଥିଲୁ । ପତ୍ରିକାଟି ଏବେ ତ ବନ୍ଦ ହୋଇ ଗଲାଣି । ଯା ଭିତରେ ଆମେ ଅଧୁନାର ଭଲମନ୍ଦ ବିଷୟରେ କେତେ କଥା ଶୁଣୁଛୁ । ପୁଣି ଥରେ ଅଧୁନା ବାହାର କରିବା ପାଇଁ ଅନେକ ବନ୍ଧୁ ପରାମର୍ଶ ଦେଇଛନ୍ତି । ବହୁତ ଭଲ ମନ୍ଦର ବାଣୀ ଶୁଣିଛୁ ।

ସେହି ସମୟ ଭିତରେ ଯାହା ଆମେ ସମ୍ପାଦକୀୟ ସ୍ତମ୍ଭରେ କହିଥିଲୁ ତାହାକୁ ଆଜ ଏକ ପୁସ୍ତକାକାରରେ ପ୍ରକାଶ କରୁଛୁ । ଯେଉଁ କେତୋଟି ସମ୍ପାଦକୀୟ ଶ୍ରୀ ରଘୁନାଥ ମହାପାତ୍ର ବା ଶ୍ରୀ ହରପ୍ରସନ୍ନ ଦାସ ଲେଖିଥିଲେ ତାହାକୁ ବାଦ ଦେଇଛୁ । ତା ଛଡ଼ା ୧୯୭୦ ମସିହାରେ ଓ୍ୱୁମେନ୍ସ କଲେଜର ମୁଖପତ୍ରରେ ପ୍ରକାଶିତ ଏକ ପ୍ରବନ୍ଧ ତଥା ଭବାନୀପାଟଣାରେ କାର୍ଯ୍ୟରତ ଥିଲା ବେଳେ ମହାବୀର ସାଂସ୍କୃତିକ ଅନୁଷ୍ଠାନ ପକ୍ଷରୁ ୧୯୮୦ ମସିହାରେ ଆୟୋଜିତ ଏକ ଉତ୍ସବରେ ଦେଇଥିବା ଭାଷଣକୁ ସାମ୍ପ୍ରତିକ କବିତାର ଆଲୋଚନା ନିମିତ୍ତ ଆବଶ୍ୟକୀୟ ମନେକରି ସଂଯୋଜିତ କରାଯାଇ ଅଛି । ୧୯୭୦ ରୁ ୧୯୮୦ ମଧ୍ୟରେ ବହୁ ସଭା ସମିତିରେ ମୁଁ ପ୍ରାୟ ଏହି କଥା କହି ଆସିଛି । ତେଣୁ ସାହିତ୍ୟ ପ୍ରତି ମୁଁ ଯେଉଁ ଦୃଷ୍ଟି ଭଙ୍ଗୀ ନେଇଥିଲି ତାହାକୁ ଏକ ସମନ୍ୱିତ ରୂପରେ ଉପସ୍ଥାପିତ କରୁଛି ଏହି ପୁସ୍ତକ ମାଧ୍ୟମରେ ।

ଏଭଳି ପୁସ୍ତକଟିଏ ପ୍ରକାଶ କରିବା ନିମିତ୍ତ ବହୁ ଦିନରୁ ଯୋଜନା କରାଯାଇଥିଲା । ସରକାରୀ ମହାବିଦ୍ୟାଳୟ, ଭବାନୀ ପାଟଣାରେ ଥିଲା ବେଳେ

ଏହି ଯୋଜନାକୁ ପ୍ରଥମେ ପସନ୍ଦ କରିଥିଲେ ଅଧ୍ୟାପକ ଅବନୀ କୁମାର କୁଣ୍ଡୁ ଏବଂ ଅଧ୍ୟାପକ ଗୋପବନ୍ଧୁ ଦାଶ । ଗୋପବନ୍ଧୁ ବାବୁ ବର୍ତ୍ତମାନ ସାମନ୍ତ ଚନ୍ଦ୍ରଶେଖର କଲେଜରେ ସହକର୍ମୀ, ଅବନୀ ବାବୁ ଯାଇ ବାରିପଦାରେ । ମୋର ଆଶା ସେ ଯୋଜନାଟି କାର୍ଯ୍ୟକାରୀ ହୋଇଥିବା ହେତୁ ସେମାନେ ନିଶ୍ଚୟ ଖୁସି ହେବେ । ଆହୁରି ଖୁସି ହେବେ କବି କମଳାକାନ୍ତ ଲେଙ୍କା । ସେ ମୋଠାରୁ ବୟସରେ ବଡ ମାତ୍ର ଭାବରେ ସମାନ । ଚିଢିଏ ଲେଖାରିଲେ ମୋ ଉପରେ ରାଗନ୍ତି, ଗୁଡାଏ ବକନ୍ତି । ସବୁଠାରୁ ଶେଷ ହୁଏ, "କିଛି କାମ କର । ତୁମ ହାତରେ ବହୁତ କାମ ହୋଇ ପାରନ୍ତା । ଅନ୍ୟ ଆଡେ ମନ ଦିଅନା ।" ସେ ଆଜି ଖୁସି ହେବେ ଯେ ମୁଁ ପୁଣି ଏଇ ସାହିତ୍ୟ ଜଗତକୁ ଫେରି ଆସୁଛି ବୋଲି । ପୁଣି ସେ ରାଗିବେ ଯେ କେତୋଟି ସ୍ଥାନରେ ବହୁ ଦୀର୍ଘ ଉଦ୍ଧୃତି ଦିଆ ଯାଇଛି । ଏଇଥିପାଇଁ ଦିଆଯାଇଛି ଯେ ଉଦାହରଣ ପାଇଁ ବେଶୀ ଖୋଜାଖୋଜିର କଷ୍ଟ କରିବାକୁ ପଡ଼ିବ ନାହିଁ ବୋଲି ।

ଅଧ୍ୟାପକ ବାସୁଦେବ ପାଠୀଙ୍କ ଲାଗି ହିଁ ଯୋଜନାଟି କାର୍ଯ୍ୟକାରୀ ହୋଇ ପାରିଲା । ସେ ଓ ମୁଁ ଏକା ଛାତ ତଳେ କେତୋଟି ସମସ୍ୟା ବହୁଳ ବର୍ଷ ବ୍ରହ୍ମପୁରରେ କଟାଇ ଥିଲୁ । ତେଣୁ ସେହି ସମ୍ପର୍କର ଅନୁବନ୍ଧରେ ତାଙ୍କର ଚେଷ୍ଟାରେ ମୁଦ୍ରଣ କାର୍ଯ୍ୟ ସମ୍ଭବପର ହୋଇ ପାରିଛି । ସମସ୍ତଙ୍କୁ କୃତଜ୍ଞତା ଜଣାଉଛି । ଏଣିକି ମୁଁ/ଆମେ ଏତେ କ'ଣ ଲେଖୁଛୁ ତାହା ପାଠକ ମାନଙ୍କ ଉପରେ ।

ତା ୧।୧୦।୧୯୮୩ —ଲେଖକ

ବାରଣରସିଂହପୁର, ପୁରୀ

# ଆମେ ଏବେ କ'ଣ ଲେଖୁଛୁ ?

ବ୍ରହ୍ମାଙ୍କ ଦ୍ୱାରା ସୃଷ୍ଟ ପୃଥିବୀ ଯେତେ ବିଚିତ୍ର ହେଉ ନା କାହିଁକି ଆମର ସାହିତ୍ୟ ଓ ସାହିତ୍ୟିକ ଜଗତ ଅଧିକ ବିଚିତ୍ର । ଯଶୋଦା ଶ୍ରୀକୃଷ୍ଣଙ୍କ ପାଟି ଭିତରେ ବା ମହିଷାସୁର ଜଗତ୍‌ଜନନୀଙ୍କ ଜାନୁଗହ୍ୱରରେ ବିଶ୍ୱରୂପ ଦର୍ଶନ କରି ସ୍ୱୀୟ ଗର୍ବ ପରିହାର କରୁଥିଲେ ମଧ୍ୟ ସାହିତ୍ୟ ଜଗତର ବିଶ୍ୱରୂପ ଦେଖିଲେ ଗର୍ବ କରିବାକୁ ଇଚ୍ଛା ହେବ । କାରଣ ଏହା ଏଭଳି ଏକ ଶସ୍ତା ବାଟ ଯେ ଲୋକ କିଛି ସାହିତ୍ୟିକ ଗର୍ବ ନେଇ ସହରର ରାଜରାସ୍ତାଠୁ ସଭାଗୃହ ପର୍ଯ୍ୟନ୍ତ ଛାତି ଫୁଲାଇ ଚାଲିପାରିବ ।

କବି ରବି ସିଂ ଅନୁଧ୍ୟାନ କରି ଥରେ ଠିକ୍ ଭାବରେ ଲେଖିଥିଲେ—"ତାରୁଣ୍ୟର ମାନେ ନୁହେଁ ଜଳମାନ ସିଗାରେଟ ବାରମ୍ବାର ଗୁଲ୍ ଖାଇ ଝୁଣ୍ଡ ସେଲୁନରେ ଦାଢ଼ି କମାଇବା ବା ସମ୍ବାଦପତ୍ରର ସ୍ତମ୍ଭରେ ନିଜ ନାମ ଦେଖିବାକୁ ନୁପିଲ ଅକ୍ଷରରେ ଗଦ୍ୟ ନୁହେଁ ପଦ୍ୟ ନୁହେଁ, ସ୍ୱାଦୁ ସ୍ୱାଦୁ କେଇଧାଡ଼ି ଲେଖିବା ବା ଅନୁଭୂତି ନ ଥାଇ ବି ଅନୁଭୂତିର ନାଡ଼ି ଚିପିବା ।" କଥାଟା ଏକାବେଳେକେ ଠିକ୍ । ସାହିତ୍ୟ କୌଣସି ଜଣେ ଲୋକର ଭାବ ପ୍ରକାଶ ନୁହେଁ । କାରଣ ସବୁ ଭାବ ସାର୍ବଜନୀନ ନୁହେଁ । ଯେଉଁ ବ୍ୟକ୍ତିଗତ ଭାବ ସାର୍ବଜନୀନ ସତ୍ୟର ନିକଟବର୍ତ୍ତୀ ତାହା ଭାଷା ଓ ଲିପି ମାଧ୍ୟମରେ ପ୍ରକାଶ ପାଇଲେ ହିଁ ସାହିତ୍ୟ ପର୍ଯ୍ୟାୟବାଚୀ ହେବ ।

ଏଣୁ ସାହିତ୍ୟିକ ସାହିତ୍ୟ ସୃଷ୍ଟି କଲାବେଳେ ଏଇ କଥାଟି ପ୍ରତି ଦୃଷ୍ଟି ଦେବା ଉଚିତ । ମାତ୍ର ଆମ ବର୍ତ୍ତମାନ ସାହିତ୍ୟ ଜଗତରେ ଏହା କେତେକ ଲେଖକଙ୍କର ଦୃଷ୍ଟିଭଙ୍ଗୀ ନୁହେଁ । ସେମାନେ ଯେତେବେଳେ ଯାହା ଭାବୁଛନ୍ତି ତାହା ଯେ କୌଣସି ପ୍ରକାରରେ ଲେଖି ପ୍ରକାଶ କରାଇବା ଚେଷ୍ଟାରେ ଚେଷ୍ଟିତ । ଫକୀର ମୋହନଙ୍କ ବେଳଠୁ ଅଧୁନାର ଗତ ସଂଖ୍ୟା ସମ୍ପାଦକୀୟ ପର୍ଯ୍ୟନ୍ତ ଏଇ ଗୋଟିଏ କଥା ଆମେ ବାରମ୍ବାର କହି ଚାଲିଛୁ ଯେ ସାହିତ୍ୟ ପ୍ରତି ଲୋକଙ୍କର ଅନାଦର ବଢ଼ି ଚାଲିଛି । ପୁଣି ଏହା ଓଡ଼ିଶାରେ ଯଥେଷ୍ଟ ବେଶୀ । କଥାଟି ଗୋଟିଏ ଦୃଷ୍ଟିକୋଣରୁ ଠିକ୍ । କିନ୍ତୁ ତା' ସଙ୍ଗେ ସଙ୍ଗେ ଆଉ ପଟଟି ମଧ୍ୟ ଆମେ ଦେଖିବା । ଫକୀରମୋହନଙ୍କ ସମୟରେ ଆହୁରି କେତେ ଲୋକ ବହି ଲେଖିଥିଲେ । କିନ୍ତୁ ଏବେ ସେମାନଙ୍କ ମଧ୍ୟରୁ ଫକୀରମୋହନ ବେଶୀ ଆଦୃତ । ପୁଣି ଫକୀରମୋହନଙ୍କ ବହୁ ବହି ମଧ୍ୟରୁ ମାତ୍ର ଗୋଟିଏ କି ଦୁଇଟି ବେଶୀ ଲୋକପ୍ରିୟ । ତା'ର କାରଣ ସେ ଉଭୟ ମନୋରଞ୍ଜନ ଓ ଶିକ୍ଷାପ୍ରଦାନ ଉଦ୍ଦେଶ୍ୟରେ ସାହିତ୍ୟ ସୃଷ୍ଟି କରିଥିଲେ ।

ସାହିତ୍ୟର ଏଇ ଧାରା ବା ପ୍ରକୃତି ସହ ପରିଚିତ ହୋଇ ଲେଖିବା ଉଚିତ । ନହେଲେ ଲୋକଙ୍କର ଅନାଦର ଲଭି କରି ଦୁଃଖିତ ହେବାର କିଛି ମୂଲ୍ୟ ନାହିଁ । ଏଇ ୧୯୭୮ ମସିହାରେ ସିନା ଓଡ଼ିଆରେ ମାତ୍ର ଅଳ୍ପ ପତ୍ରିକା ବାହାରୁଛି । ନ ହେଲେ ଗଲା କିଛିବର୍ଷ ତଳେ ପତ୍ରିକା ସଂଖ୍ୟା ଅମରି ଗଛପରି ବଢ଼ି ଯାଉଥିଲା । ଏତେ ପତ୍ରିକାରେ କେତେ ଲୋକଙ୍କର ଲେଖା ପ୍ରକାଶ ପାଇଛି । କିନ୍ତୁ ସାହିତ୍ୟ ପ୍ରତି ଆଦର ବଢ଼ିଲା ନାହିଁ କାହିଁକି ? ଏଇକଥା ଚିନ୍ତା କରିବାକୁ ହେଲେ ଆମେ କ'ଣ ଲେଖୁଛୁ ତାହା ଭାବିବାକୁ ହେବ ।

ଆଉ ଆଦର ସମ୍ପର୍କରେ ମୁଁ କହୁଛି ଯେ ମୋର ବ୍ୟକ୍ତିଗତ ଅନୁଭୂତି ପ୍ରତି ଆଦର ଅଛି । ଏହି ଆଦର ଓ ପଇସା ନେଇ କିଣିବା ଦୁଇଟି ସମାନ ପର୍ଯ୍ୟାୟର ନୁହେଁ । ବାହାରେଲ ପ୍ରତି ସମସ୍ତଙ୍କର ଆଦର ଅଛି । ମାତ୍ର ଅନୁପାତ ଦୃଷ୍ଟିରୁ କେତେଜଣ କିଣନ୍ତି ? ତା'ଛଡ଼ା ମୋ ପିଲାବେଳର ବାଥ୍‌ଗେଟ୍ କମ୍ପାନୀର ଜଡ଼ାତେଲ ଏବେ ଅଚଳ । ସେହିମିତି ଅତର ପକାଇବା ବା ପାଉଡର ମାଖିବା କଥା ଦେଖନ୍ତୁ । ବହୁ ପାଉଡର କମ୍ପାନୀ ଅନାଦୃତ ହେଲେଣି ଓ ନୂଆ ପ୍ରତିଷ୍ଠାନ ଲୋକପ୍ରିୟ ହେଲେଣି । ସାହିତ୍ୟ ପ୍ରତି ଠିକ୍ ସେଇୟା । ଆମେ ଯାହା ଲେଖିବା ତାହା ସାର୍ବଜନୀନତାର ଛାପ ବହନ କଲେ ଆଦୃତ ହେବ, ନୂତନତା ରହିଲେ ଆଦୃତ ହେବ ।

ନୂତନତାର ଅର୍ଥ ଖାଲି ପ୍ରକାଶଭଙ୍ଗୀ ବଦଳାଇବା ନୁହେଁ । ଯେତେକ ଝିଅ ବେଲ୍ ପିନ୍ଧି ବୁଲୁଛନ୍ତି ସମସ୍ତେ ଭଲ ଦେଖାଯାଉ ନାହାନ୍ତି ଯଦିଓ ତାହା ଏକ ଆଧୁନିକ ସୁନ୍ଦର ପୋଷାକ । ଅର୍ଥାତ୍ ପରିଚ୍ଛଦ ବଡ଼କଥା ନୁହେଁ, ଭିତରର ଆତ୍ମା ବା ଅନ୍ତର୍ପକ୍ଷ ବଡ଼ । ଅନ୍ତର୍ପକ୍ଷ ସୁନ୍ଦର ଓ ନୂତନ ହେଲେ ବାହାର ପରିଚ୍ଛଦ ଆଧୁନିକ ନହେଲେ ମଧ୍ୟ ଭଲ ମାନବ । ଲୋକେ ପସନ୍ଦ କରିବେ । ଉଭୟ ଉଭୟର ପରି-ପୂରକ । ଏହି ଦୃଷ୍ଟିରୁ ଆମେ ଆମ ଲେଖାର ତର୍ଜମା କରିବା ଉଚିତ୍ । କିନ୍ତୁ ତାହା ହେଉନାହିଁ । ଯିଏ ଯାହା ବୁଝିଲା ତାହା ଗ୍ରହଣଯୋଗ୍ୟ ନ ହେଲେ ମଧ୍ୟ ଛପାଇ ଦେବାକୁ ଜିଗର କରୁଛି । କ୍ଷୁଦ୍ର ସମ୍ପାଦକୀୟରେ ତାହା ବୁଝାଇବା ସମ୍ଭବ ନୁହେଁ ।

ଜଣେ ଅଧ୍ୟାପକ ଆମେ ମିନିଗପ ପ୍ରକାଶ କରିବାକୁ ଇଚ୍ଛୁକ ବୋଲି ଜାଣି ବଧେଇ ଜଣାଇ ପତ୍ର ଲେଖିଛନ୍ତି । ମାତ୍ର ଆମେ ମିନି ଗପର ଅନାଦର ସମ୍ପର୍କରେ ବି ବହୁ ମତାମତ ପାଇଛୁ । କିନ୍ତୁ ଦୋଷଟା ମିନି ଗପର ନୁହେଁ । ଦୋଷ ଆମ ଲେଖାର । ସେଇଟି ଗଳ୍ପ ସଂଖ୍ୟା 'ଯୀଶୁଙ୍କ ଚିଠି' ଶୀର୍ଷକ ମିନିଗପ ଆଦୃତ ହେଲାବେଳେ 'ମିନିଗପ ଆନ୍ଦୋଳନ' ଅନାଦୃତ ହୋଇ ବନ୍ଦହେଲା କାହିଁକି ? ଚିନ୍ତା କରନ୍ତୁ ଓ ଦେଶପରିହାର କରି ଭାବଉଦ୍ଦୀପକ ମିନିଗପ ଛାଡ଼ି ଆଟମ୍ ଗପ ଲେଖିଲେ ବି ଲୋକେ ଅଲବତ୍ ପସନ୍ଦ କରିବେ । ଆଦର କରିବେ । ମାତ୍ର ଯା' ତାହା ଲେଖିଲେ ହେବନାହିଁ । ସେହିପରି ଗୁଡ଼ାଏ ଶବ୍ଦ ଗୂଢ଼ାର୍ଥ୍ୟ ଦେଖେଇ ଫାଲ୍ତୁ ଲେଖା ପ୍ରକାଶ କଲେ ସେ ସାହିତ୍ୟକୁ ଲୋକେ ସମ୍ପୂର୍ଣ୍ଣ ଭୁଲିଯିବେ । ସାହିତ୍ୟ ଜଣେ ଲେଖକର ସ୍ୱୀୟ ଅଭିମତର ଅଭିଭାଷଣ ପାଇଁ ପଢ଼ାଯାଏନି । ସେଥିପାଇଁ ଭିନ୍ନ କ୍ଷେତ୍ର ଅଛି । ସାହିତ୍ୟରେ ପାଠକ ନିଜ ଅନୁଭୂତି ଓ ଅଭିମତର ସ୍ପର୍ଶକୁ ଖୋଜେ, "ଯାହାହେଉ ମୋର କଥା କୁହାଯାଇଛି" ଭାବି ଆନନ୍ଦିତ ହୁଏ । ଏକଥା ଆମର କେତେ ଲେଖକ ବୁଝୁଛନ୍ତି ?

ଆଉ ଗୋଟାଏ କଥା । ସେମିତି ଅଜାତଶ୍ମଶ୍ରୁ ନବଯୁବକ ଅନୁକରଣ କରି ପ୍ରବୀଣ ହେବାର ସଂଗୁପ୍ତ ଇଚ୍ଛାକୁ ପୂରଣ କରେ, ବଡ଼ ଲୋକଙ୍କ ପରି ସିଗାରେଟ୍ ଟାଣିବାଠାରୁ ଲୁଚେଇ କରି ବାପାଙ୍କ ଖିଅର ସଜରେ ଖିଅର ହେବାକୁ ବସିପଡ଼େ. ଠିକ୍ ସେମିତି କେତେକ ଲେଖକ ନିଜକୁ ବଡ଼ ଲେଖକଙ୍କ ସହ ସଂପୃକ୍ତ କରିବାକୁ ଅନୁକରଣ, ଉଦ୍ଧରଣରେ କାର୍ଯ୍ୟରେ ଲାଗିପଡ଼ନ୍ତି । କିଏ କଥାକେ ସାର୍ତ୍ରେ, କାମ୍ୟୁ, କାଫ୍କା ପାଲଟେ । କିନ୍ତୁ ଫଳରେ ଆମେ ଲକ୍ଷ୍ୟ କରୁ ଯେ ସେମାନଙ୍କ

ଅନୁକରଣ ଭ୍ରାନ୍ତ ଓ ଅସଙ୍ଗତ ଦୋଷ ଦୁଷ୍ଟ । ଫତୁରାନନ୍ଦଙ୍କ ୧୯୭୨ ମସିହା ଜୁଲାଇ ସଂଖ୍ୟା ଅଧୁନାରେ ପ୍ରକାଶିତ 'ଲଣ୍ଠକ ସାହାନ୍ଦର' ଗପ ପଢ଼ନ୍ତୁ । କଥାଟି ବୁଝିବେ । ଆଉ ଗୋଟିଏ କଥା କହୁଛି, ଆମକୁ କେତେକ ଲୋକ ଗପ ଦେଇ କହନ୍ତି, "ବୁଝିଲେ, ଏଇ ଗପଟିକୁ ଛାପିଲେ ଗୋଟାଏ ହୁଲସ୍ଥୂଲ ପଡ଼ିଯିବ । ଅମୁକ ( ଦେଶର କେହି ବିଶିଷ୍ଟ ) ଲୋକଙ୍କୁ କେନ୍ଦ୍ର କରି ଲେଖିଛି ।" କିନ୍ତୁ ଗପରେ ପ୍ରକୃତ କଥା ମୋଟେ ନ ଥାଏ । ଏକଥା କେବଳ ସେହି ବିଶିଷ୍ଟ ଲୋକଙ୍କ ସହ ନିଜକୁ ସଂଯୁକ୍ତ କରି (Identify) ନିଜକୁ ବିଶିଷ୍ଟ କରିବା ନିମିତ୍ତ ଏକ ଅପପ୍ରୟାସ ମାତ୍ର ।

ଆମ ଲେଖାର ଆଉ ଗୋଟିଏ କଥା ଶାଢ଼ୀକୁ କେନ୍ଦ୍ର କରି । ସବୁ ଲେଖକଙ୍କର ପ୍ରେରଣାଦାୟିନୀ କଲାବଉଣ ନ ଥାନ୍ତି । ଥିଲେ ମଧ୍ୟ ସମସ୍ତେ ଉପେନ୍ଦ୍ର-ଭଞ୍ଜ ହୁଅନ୍ତି ନାହିଁ । ତେଣୁ ସାହିତ୍ୟ ସୃଷ୍ଟି ନିମିତ୍ତ କଲାବଉଣର ଉପସ୍ଥିତି ଏକ କାକତାଳୀୟ ନ୍ୟାୟ ମାତ୍ର । ଅଥଚ ଏବର ଆମ କେତେକଙ୍କର ଲେଖା ଆମ ପ୍ରେମିକାଙ୍କ ପ୍ରତି ଉଦ୍ଦିଷ୍ଟ । ଲେଖା ବାହାରିଲେ ଲୋକେ ନ ପଢନ୍ତୁ ପଛକେ, ପ୍ରେମିକାର ପଢିବାର ଆଗ୍ରହ ନ ଥାଉ ପଛକେ ପୌରୁଷର ଚମତ୍କାରିତା ଦେଖାଇ, "ବୁଝିଲ, ହେଇଟି ମୋର ଗୋଟାଏ ଭାରି ବଢିଆ ଲେଖା ବାହାରିଛି" ବୋଲି କହି, ଛଟି ଲେଖି ହେବ ତ ?

ସାହିତ୍ୟ ଏକ ସାମୟିକ ବିଳାସ ନୁହେଁ । ମନୋରଞ୍ଜନ କରିବା ଓ ସମାଜ ଗଠନ କରିବା ଏହାର ଉଦ୍ଦେଶ୍ୟ । କେବଳ ଆତ୍ମାଭିବ୍ୟକ୍ତି ସାହିତ୍ୟ ନୁହେଁ । ସାହିତ୍ୟ ଆତ୍ମାନୁଶୀଳନ ନୁହେଁ, ସମାଜର ପ୍ରତିଫଳନ । ଏହାହିଁ ସାହିତ୍ୟକୁ ଚିରଞ୍ଜୀବୀ କରେ । ଆମେ ଯଦି ସେଥିପ୍ରତି ମନ ନ ଦେବା ତେବେ ସାହିତ୍ୟର ଆତ୍ମନିର୍ବାସନ ଏକ ଅବଶ୍ୟମ୍ଭାବୀ ପରିଣତି । ଅନ୍ୟାନ୍ୟ ପ୍ରାନ୍ତୀୟ ସାହିତ୍ୟ ପ୍ରତି ଦୃକ୍‌ପାତ କଲେ ଆମେ ଜାଣିପାରିବା ସେ ସାହିତ୍ୟ ସମ୍ପ୍ରତି କ ସ୍ତରକୁ ଆସିଛି । ମୁଁ ସ୍ୱୀକାର କରୁଛି ଯେ ବହୁ ଶ୍ରେଣୀର ସାହିତ୍ୟ ବହୁ ଲୋକଙ୍କ ଦ୍ୱାରା ରଚିତ ହୋଇ ଅବ-ଶେଷରେ ସମୟାନୁକ୍ରମେ କାଳଜୟୀ ସାହିତ୍ୟକୁ ବାଛିଥାଏ । ତଥାପି ଆମେ ଆମ ଲେଖା ପ୍ରତି ସଚେତନ ହେବା ଉଚିତ ।

ସମ୍ପ୍ରତି ସାହିତ୍ୟିକର ବ୍ୟକ୍ତିତ୍ୱ ଓ କୃତିତ୍ୱ ଏକ ଏବଂ ଅଭିନ୍ନ ହୋଇ ଉଠୁଥିବା ଦୃଷ୍ଟିରୁ ଓ ସାହିତ୍ୟିକଙ୍କର ସଂଖ୍ୟା ବଢିଥିବା ଦୃଷ୍ଟିରୁ ପ୍ରତି ସାହିତ୍ୟିକର

'ଅହଂବାଦ'କୁ ଗ୍ରହଣ କରିବାକୁ ହେବ । କିନ୍ତୁ ଆପଣ ଜାଣନ୍ତି ବ୍ୟକ୍ତିର ପ୍ରଥମ ପ୍ରବୃତ୍ତି ଅପରର ଅହଂକୁ ଗ୍ରହଣ ନ କରିବା । ଅର୍ଥାତ୍ ସାହିତ୍ୟିକର 'ଅହଂବାଦ'କୁ ଦ୍ୱିଧାଗ୍ରସ୍ତ ମନଦେଇ ପାଠକ ଗ୍ରହଣ କରେ । ରସଗ୍ରହଣର ଏହି ପରସ୍ପର ବିରୋଧୀ ଅବସ୍ଥା ରୂପକ ସମସ୍ୟାକୁ କେବଳ ସାହିତ୍ୟିକ ସମାହିତ କରିପାରେ । ସାଧନାର ପନ୍ଥା ଆତ୍ମାଭିବ୍ୟକ୍ତି ନୁହେଁ ମାତ୍ର ଅଭିବ୍ୟକ୍ତିର ଭଙ୍ଗୀ ଉପରେ ନିର୍ଭର କରେ । ଏଣୁ ପରିବେଶ ସୃଷ୍ଟି ସାହିତ୍ୟର ବଡ଼ କଥା । ପରିବେଶ ସୃଷ୍ଟି କଲାବେଳେ ସାହିତ୍ୟିକ ଦେଖିବା ଉଚିତ ଯେ ଯେପରି ପାଠକ ସାହିତ୍ୟ ପାଠ କଲାବେଳେ 'ସ୍ୱୀକାରିବିଦଭିନ୍ନତ୍ୱ' ବା ନିଜଠାରୁ ଅଭିନ୍ନ ମନେ କରିବା ଉଚିତ । ଏଣୁ ଆମେ ତାହା କିପରି କରୁଛୁ ଦେଖିବା ଉଚିତ । ଆମେ କ'ଣ ଲେଖୁଛୁ ତାହା ଜାଣିବା ଉଚିତ ।

ମନୋବିଶ୍ଳେଷଣ ଅର୍ଥ କେବଳ ନିଜ ମନର ନୈରାଶ୍ୟ ଓ ଗ୍ଲାନିକୁ ପ୍ରକାଶ କରିବା ନୁହେଁ । ଚନ୍ଦ୍ରମଣିର ବାହାଘର କଥା ପଢ଼ୁଥିଲାବେଳେ ଚନ୍ଦ୍ରମଣି ବିରାଡ଼ି ସାଙ୍ଗରେ ଲାଗି 'ମାମୁଁ' ଉପନ୍ୟାସରେ ନିଜ ମନୋଭାବକୁ ପ୍ରକାଶ କରିଛି । ତାହା ଫକୀରମୋହନଙ୍କ ମନୋବିଶ୍ଳେଷଣ । ଠିକ୍ ସେହିପରି 'ଲୋଲିଟା' ଉପନ୍ୟାସରେ ଏକ ବିଚିତ୍ର ମାନସିକତାର ପ୍ରକାଶ କରାଯାଇଛି । ଲେଡ଼ି ଚ୍ୟାଟର୍ଲିଜ୍ ଲଭରଠାରୁ ୟୁଲିସିସ୍ ପର୍ଯ୍ୟନ୍ତ ସେଇକଥା । ତା'ଛଡ଼ା ଆମର ମାନସିକତା କେବଳ ଶୃଙ୍ଗାର ଭାବ-ମୂଳକ ନୁହେଁ । ଆଉ ବହୁ କଥା ଅଛି । ବିଧବା ତିଳୋତ୍ତମାଙ୍କ ମାନସିକ ବିଶ୍ଳେଷଣ ଯେପରି ଘଟିଛି । 'ଖଣ୍ଡେ ଛିଣ୍ଡା ମଇଳା ଦଲିଲ୍'ରେ ତାହା ମଧ୍ୟ ଲକ୍ଷଣୀୟ । ଜଣେ ପ୍ରେମିକ ବା ସ୍ୱାମୀର ମନ ପରି ଜଣେ ଦୁଷ୍ଟ ରୋଗୀର ମନ, ଜଣେ ରିକ୍ସା ଚାଳକର ମନକୁ ମଧ୍ୟ ବିଶ୍ଳେଷଣ କରିବା ଉଚିତ ।

ଆଜିର ସାହିତ୍ୟର ଅନ୍ୟତମ ବୈଶିଷ୍ଟ୍ୟ ବସ୍ତୁତ ଜ୍ଞାନ ବିଜ୍ଞାନର ପ୍ରବେଶ । ଆଜି ସାଧାରଣ ଲୋକ ନେଫ୍ରାଇଟିସ୍ ରୋଗ ଓ ଡାଇଲସିସ ଯନ୍ତ୍ର ପ୍ରୟୋଗ ସମ୍ପର୍କରେ ଜାଣୁଥିଲା ବେଳେ ଆମ ସାହିତ୍ୟର ନାୟକ ଯଦି ଖାଲି ଝାଡ଼ା ରୋଗରେ ପୀଡ଼ିତ ହୋଇ 'ସଲଫା ଡାୟାଜିନ୍' ଖାଇ ବସେ, ତେବେ ପାଠକ ନୂତନତା କ'ଣ ପାଇଲେ ? ଚୁଲିଶାଳାରେ ମଣିଷ ପୋଡି ହୋଇ ଗଲାବେଳେ ଆମ ନାୟକ ଯଦି ଖାଲି ମେସିନ୍‌ରେ କଟିଯାଏ ତେବେ ନୂତନତା କାହିଁ ? ଡ଼ିଜେଲ୍ କାର୍ ରାସ୍ତାରେ ଚାଲିଲା ବେଳେ ଆମ ନାୟକ ଯଦି ଖାଲି ପେଟ୍ରୋଲ୍ କାର୍

ଚଢ଼େ ତେବେ ପ୍ରାଚୀନତା ଏହା ବ୍ୟତୀତ କ'ଣ ଅଛି ? ଏମିତି ବହୁ ବିଷୟରେ କୁହାଯାଇପାରେ । ପ୍ରାଚୀନ କଳାର ଦେଶ ଉତ୍କଳ ଭୂମିରୁ . ଏତେ ମୂର୍ତ୍ତି ଚୋରୀ ଗଲା, ସେ ସମ୍ପର୍କରେ କେଇଟା ଗପ ବାହାରିଛି ? ଆଜି କେତେ କ'ଣ କଳ-କାରଖାନା ହେଲାଣି । ସେ ସମ୍ପର୍କରେ ଲେଖା କେତେ ?

ବରଂ କୋଡ଼ିଏ ବର୍ଷ ତଳେ ଓଡ଼ିଆ ଲେଖକମାନେ ନୂଆ ନୂଆ ଖୋଲା ହେଉଥିବା ଖଣି ଖାଦାନର କଥା ଲେଖୁଥିଲେ, ପୁରୁଣା 'ଜନ-ସାହିତ୍ୟ'ରେ ଏମିତି କେତେ ଲେଖା ବାହାରିଥିଲା । ମାତ୍ର ଆଜି ସେସବୁ ବନ୍ଦ । ଏଣୁ ଏଥିପ୍ରତି ଦୃଷ୍ଟି ଦେଇ ଆମେ କ'ଣ ଲେଖୁଛୁ ସେଥିପ୍ରତି ଧ୍ୟାନ ଦେବା ଉଚିତ୍ । ଏଥରକ ଏତିକି ।



( ଅଧୁନା ୭ମ ବର୍ଷ ୨ୟ ସଂଖ୍ୟା
ସେପ୍ଟେମ୍ବର - ଅକ୍ଟୋବର ୧୯୭୮ )

# ସମସାମୟିକ ଗଳ୍ପ ସାହିତ୍ୟ (୧)

ଏଥରକ ପୂଜାସଂଖ୍ୟା ପାଇଁ ସମ୍ପାଦକୀୟ ଲେଖିବାକୁ ଗଲାବେଳେ ଆଲୋଚ୍ୟ ବିଷୟଟି ବ୍ୟତୀତ ମୋ ହାତରେ ଅନ୍ୟ ବିଷୟ ନାହିଁ । ଏଇଥିପାଇଁ ଯେ 'ଅଧୁନା'ର ଲକ୍ଷ୍ୟ ଏବଂ ଅଭିମୁଖ୍ୟ ଏପରି ଯେ ତାକୁ ଆଖି ଆଗରେ ରଖି ହିଁ ସମ୍ପାଦକୀୟଟି ଲେଖାଯିବା ଦରକାର । ଏକ ଉନ୍ନତ ଗଣସାହିତ୍ୟର ପରମ୍ପରା ସୃଷ୍ଟି, ସୁସ୍ଥ ସାହିତ୍ୟିକ ରୁଚିବୋଧର ଜାଗୃତି, ଜାତୀୟ ସଂହତି ରକ୍ଷା, ସମାଜବାଦୀ, ବାସ୍ତବ-ବାଦୀ ସାହିତ୍ୟିକ ଆନ୍ଦୋଳନର ପ୍ରସ୍ତୁତି, ସାମାଜିକ ସମସ୍ୟାର ସାହିତ୍ୟିକ ସମାଧାନ ଓ ସର୍ବୋପରି ଆଜିକା ପରି ସ୍ପେସିଆଲାଇଜେସନ୍‌ର ଯୁଗକୁ ନେଇ ସମନ୍ୱୟ ସଂସ୍ଥାପନା 'ଅଧୁନା'ର ଲକ୍ଷ୍ୟ । ଏହି ଲକ୍ଷ୍ୟ ପୂରଣ ଦିଗରେ ଆମେ ଯଥାଶକ୍ତି ଉଦ୍ୟମ କରି ଚାଲିଛୁ । ଏହାର ଲକ୍ଷ୍ୟ କେତେଦୂର ହାସଲ କରାଯାଇ ପାରିଛି ତାହା ଭିନ୍ନ ପରିସରରେ ବିଚାର୍ଯ୍ୟ ।

ତଥାପି ମାସକୁ ମାସ 'ଅଧୁନା'ର ଲୋକପ୍ରିୟତା ବଢ଼ି ଚାଲିଥିବାର ଆମେ ଲକ୍ଷ୍ୟ କରି ଚାଲିଛୁ । ଅନ୍ୟ ପକ୍ଷରେ ଅନାହାର ମୃତ୍ୟୁକୁ ଲୁଚାଉଥିବା କରାଣୀର ଚରିତ୍ର ଚିତ୍ରିତ 'ଜନୈକ ଗୁରୁଚରଣ ପାଳ' କ୍ୟୁରେ ରେସନ ପାଇଁ ଠିଆହେଲାବେଳେ ଗର୍ଭପାତ/ପ୍ରସବକୁ ନେଇ ଲିଖିତ 'ପୋଷେ ଚାଉଳ', ନିର୍ବାଚନକୁ ନେଇ ଲିଖିତ 'କାଦୁଅ ଫିଙ୍ଗା ଦରବାର', ଅରାଜକତାକୁ ନେଇ ଲିଖିତ 'ଜୟଶଙ୍କର', 'ଦ୍ୱାଦଶ କଳଙ୍କ' ଆଜିର ସମାଜରେ ବ୍ୟକ୍ତିର ପରସ୍ୱାପହରଣର ବଳବତୀ ଇଚ୍ଛାକୁ ନେଇ ଲିଖିତ 'ଚୋରକୁ ସାବଧାନ' ପ୍ରତିହିଂସା ତଥା ତତ୍ ସମ୍ପର୍କୀୟ ନିର୍ବୁଦ୍ଧିତାକୁ ନେଇ 'କ୍ରୁଶ', ଔଷଧର ଦରଦାମ ବୃଦ୍ଧିରେ ସରକାରୀ କର୍ମଚାରୀଙ୍କର ଖିଆଲି ମନୋବୃତ୍ତିର କାର୍ଯ୍ୟକାରିତା ସମ୍ପର୍କୀୟ 'ଆଉରଙ୍ଗଜେବଙ୍କ ସଲାମି', ଅର୍ଥର

ତାଡ଼ନାରେ କୁମାରୀର ବେଶ୍ୟାବୃତ୍ତିକୁ ନେଇ ରଚିତ 'କଳଙ୍କ' ସାମାଜିକ ଦୂର-ବସ୍ଥାକୁ ଏକ ଗୋଟୁଦାଠ ରୂପେ ତୁଳନା କରି ଲିଖିତ 'ଡନ୍ନ'ମା', ରାଜକିଶୋର ପଟ୍ଟନାୟକଙ୍କ 'ଠାକୁର ଓ ମଣିଷ' ଇତ୍ୟାଦି ବହୁ ଗଳ୍ପ ସମ୍ପର୍କରେ ଅଗଣିତ ବିମୁଗ୍ଧ ପାଠକଙ୍କ ପତ୍ର ଆମର ହସ୍ତଗତ ହୋଇଛି । 'ଅଧୁନା'ର ଗଳ୍ପ ସମ୍ପର୍କରେ ଆମେ ଏତେ ସପ୍ରଶଂସ ଚିଠି ପାଉ ଯେ ପ୍ରଥମେ ପ୍ରଥମେ ଉକ୍ତ ଚିଠି-ଗୁଡ଼ିକ ଅତି ଉତ୍ସାହିତ ହୋଇ ପ୍ରକାଶ କରିବାକୁ ଚେଷ୍ଟା କରିଥିଲୁ, ମାତ୍ର ସ୍ଥାନର ଅଭାବ ଘଟନ୍ତେ ଆମେ ସେ ପନ୍ଥା ପରିତ୍ୟାଗ କରିବାକୁ ବାଧ୍ୟ ହୋଇଥିଲୁ । କିନ୍ତୁ ସେ ସମସ୍ତରୁ ଆମ ଉଦ୍ୟମ ଯେ କିଛି ପରିମାଣରେ ଆମର ଲକ୍ଷ୍ୟ ହାସଲ ଦିଗରେ ଏକ ଅନୁକୂଳ ଆନ୍ତରିକ ବାତାବରଣ ସୃଷ୍ଟି କରିପାରିଛି ସେତିକି ଆମକୁ ବହୁତ ବେଶୀ ଉତ୍ସାହିତ କରିଛି ।

ଏ ସମସ୍ତ ସତ୍ତ୍ୱେ ଏହାର ବିପରୀତରେ ଆମ ହାତକୁ ଏଭଳି ବହୁ ଗଳ୍ପ ପ୍ରକାଶ ପାଇଁ ଆସୁଛି ଯାହାକୁ ଆମେ ପ୍ରକାଶ କରି ପାରୁ ନାହୁଁ । ବହୁ କ୍ଷେତ୍ରରେ ଉକ୍ତ ଗଳ୍ପଗୁଡ଼ିକ ନାଁ ଆଦର୍ଶବାଦୀ ନାଁ ବାସ୍ତବବାଦୀ, ବ୍ୟକ୍ତିଗତ ଅନୁଭୂତିର ସାର୍ବଜନୀନ-କରଣ ଉକ୍ତ ଲେଖାଗୁଡ଼ିକରେ ହୋଇନାହିଁ । ବିଷୟବସ୍ତୁ ଓ ଶୈଳୀରେ ନୂତନତା ନାହିଁ । ପ୍ରକାଶ ନ କଲେ କିନ୍ତୁ, କଥା ସେଇଠି ସରୁନାହିଁ ।

ଏବେ ଜଣେ ଲେଖକଙ୍କ ଚିଠି ପାଇଲି । ଭଦ୍ରଲୋକଙ୍କ ଗଳ୍ପ ଆମ ପାଇଁ ଅଗଳ୍ପ ହେଲା ଓ ସେ ପ୍ରସଙ୍ଗ କ୍ରମେ 'ଅଧୁନା'ରେ ପୂର୍ବରୁ ପ୍ରକାଶିତ ଗଳ୍ପ-ଗୁଡ଼ିକ ଅଗଳ୍ପ ବୋଲି ସାର୍ଟିଫିକେଟ ଦେଇ ବସିଛନ୍ତି । ଯୁବକ ଲୋକ । ବହୁ ଯୁବକଙ୍କ ପରି ପ୍ରଣୟ କାହାଣୀଟିଏ ଲେଖିଛନ୍ତି । ବିବାହ ପୂର୍ବର ପ୍ରେମ······। ୧୯୭୪ ମସିହାରେ ଓଡ଼ିଆ ସମାଜରେ, ଜାତିଭେଦ ପ୍ରଥା ବିଲୋପ, ଧର୍ମନିରପେକ୍ଷତା ଇତ୍ୟାଦିର ବିପୁଳ କଣ୍ଠସ୍ୱର ଶୁଣିସାରିଲା ପରେ ମଧ୍ୟ ବିବାହ ପୂର୍ବ ପ୍ରେମକୁ ବହୁ ଜନକ ଜନନୀ ଅବୈଧ, ଅନୈତିକ ତଥା ଅସାମାଜିକ ବୋଲି ମନେକରି ଥାଆନ୍ତି । ଅନ୍ୟ ପକ୍ଷରେ ମୁକ୍ତ ପ୍ରେମ ଏକ ପୁଞ୍ଜିବାଦୀ ଅବକ୍ଷୟୀ ସମାଜର ତଥା । ଖାଲି ସେତିକି ନୁହେଁ, ଉଲ୍ଲିଖିତ ଭଦ୍ରଲୋକ 'ବିଶ୍ୱମ୍ଭର'କୁ 'ବିଶ୍ୱମ୍ବର', 'କ୍ଷୀଣ'କୁ କ୍ଷିଣ' ଇତ୍ୟାଦି ଏତେ ବନାନ ଭୁଲ କରିଛନ୍ତି ଯେ ତାଙ୍କ ଲେଖାର ପ୍ରତ୍ୟେକ ଧାଡ଼ିରେ ଏକାଧିକ ବନାନ ଭୁଲ ରହିଛି ।

ଅବସ୍ଥା ଜଟିଳ ହୋଇଛି ଯେଉଁଠି ଜଣେ ତରୁଣ ଗାଳ୍ପିକ ତାଙ୍କର ଶ୍ରେଷ୍ଠ ସହରରେ ପ୍ରଖ୍ୟାତ ସାହିତ୍ୟିକ ହୋଇ ପତ୍ର ପତ୍ରିକା ବ୍ୟବସାୟ କରନ୍ତି ।

ଏମନେ ଅନ୍ୟ ବନ୍ଧୁ ପତ୍ରିକାବାଳାଙ୍କ ପରି ପତ୍ରିକା ବିକ୍ରି ପଇସା ତ ଦେବାର ନାଁ ଗନ୍ଧ ଧରନ୍ତି ନାହିଁ ତଦୁପରି ତାଙ୍କ ଲେଖା ଛପା ନ ହେଲେ ଉକ୍ତ ଅଞ୍ଚଳରେ ପତ୍ରିକା ଏକାବେଳେକେ ଅଚଳ ଅପାଙ୍କ୍ତେୟ ଓ ଅସ୍ପୃଶ୍ୟ ହୋଇଉଠେ ।

ଅପରନ୍ତୁ କେହି ନିଜ ଜୀବନୀ ଲେଖେ । କିଏ କିଏ ଆଉ ଧାପେ ଆଗକୁ ମାଡ଼ିଯାଇ ନିଜ ପ୍ରେମିକାର ନାଁ ଇତ୍ୟାଦି ଦେଇ ତର୍ନ୍ଦିଷ୍ଟର ଶାନ୍ତିଭଙ୍ଗ କରିବାର ପ୍ରଚେଷ୍ଟା କରେ । ଏହା କେବଳ ଯେ ମୋର ଅଭିଜ୍ଞତା ତାହାନୁହେଁ, ପ୍ରାୟ ସବୁ ସମ୍ପାଦକଙ୍କ ଏହି ଅବସ୍ଥା । ସେଦିନ ଭଦ୍ରଲୋକ ୧୯୭୩ ମସିହା ବିଷୁବ ସଂକ୍ରାନ୍ତି ଉପଲକ୍ଷେ ଯାଜପୁରଠାରେ ଅନୁଷ୍ଠିତ ସାହିତ୍ୟ ସଭାରେ କହିଲେ ଯେ, ତାଙ୍କ ଲେଖା ନ ଛପିଲେ ସେ ପତ୍ରିକା ବଣ୍ଡଲ୍‌ରେ ନିଆଁ ଲଗାଇ ଦେବାର ଆୟୋଜନ କରି ପାରନ୍ତି ଏବଂ ତାଙ୍କର ଏହି ଧମକରେ ଜନୈକ ସମ୍ପାଦକ ପତ୍ରିକାରେ ଉକ୍ତ ବ୍ୟକ୍ତିଙ୍କ ଲେଖା ଛପନ୍ତି । ଏଭଳି ଏକ ପରିବେଶ ଭିତରେ ମୋ ମନରେ ଗୋଟିଏ ଦ୍ୱନ୍ଦ୍ୱ ଦେଖାଦିଏ ଯେ ଆଜିର ଗଳ୍ପ ସାହିତ୍ୟ ତେବେ କିପରି ? ଆଲୋଚିତ ସାହିତ୍ୟିକ – ମୁଖାପିନ୍ଧା ଅସାହିତ୍ୟିକମାନଙ୍କ ଲେଖା ପରି ନା ମୁଁ ସମାଜ ଓ ସାହିତ୍ୟକୁ ଯେପରି ଅନୁଶୀଳନ କରୁଛି ସେପରି ? କେଉଁଟା ଠିକ୍ ? ବ୍ୟକ୍ତିଗତ ଦୁର୍ବଳତା ପ୍ରସୂତ ଅବକ୍ଷୟୀ ରୋମାଣ୍ଟିକ୍‌ତାର ନା ଭିନ୍ନ କିଛି ଧରଣର, ସାହିତ୍ୟ ମଧ୍ୟରୁ କିଏ ସମୟୋପଯୋଗୀ ।

ସାହିତ୍ୟ ଏକ ବ୍ୟକ୍ତିଗତ ସାଧନାପ୍ରସୂତ 'କଳା' ହୋଇପାରେ; କିନ୍ତୁ ଏହା ସମାଜରୁ ଉଦ୍ଭୂତ, ସମାଜ ଦ୍ୱାରା ପ୍ରଭାବିତ, ପ୍ରୋତ୍ସାହିତ ହୋଇଥାଏ ତଥା ସମାଜକୁ ପ୍ରତିବର୍ତ୍ତିତ କରିଥାଏ । ସମାଜ ପ୍ରତି ଉଦ୍ଦିଷ୍ଟ ହୋଇଥାଏ । ଯେଉଁ ସମୟରେ ଗଣତନ୍ତ୍ର ଶାସନ, ଅର୍ଥନୀତି, ସାମୂହିକ ଚୁକ୍ତିକୁ ଆମେ ସ୍ୱୀକାର କରୁ ସେତେବେଳେ ବ୍ୟକ୍ତିସ୍ୱାତନ୍ତ୍ର୍ୟ ନାମରେ ସ୍ୱେଚ୍ଛାଚାରୀ 'କଳା'ର ବନ୍ଦନା ଶୋଭନୀୟ ନୁହେଁ । ବ୍ୟକ୍ତିକୁ ବ୍ୟବସାୟ ପାଇଁ ସ୍ୱାଧୀନତା ଦେବାର ଅର୍ଥ ନୁହେଁ ଯେ ସେ ସ୍ୱାଧୀନ ହୋଇ ସମାଜ ପ୍ରତି କ୍ଷତିକାରକ ସାହିତ୍ୟ ସୃଷ୍ଟି କରିବ । ମୋଟ ଉପରେ ବ୍ୟକ୍ତିଗତ ସ୍ୱାଧୀନତା ସ୍ୱେଚ୍ଛାଧୀନତା ନୁହେଁ । ଏହି କଥାଟିର ବିରୋଧ କରିବା ଏକେତ ମୂର୍ଖତା ତଦୁପରି ଅସ୍ପୃହଣୀୟ ମଧ୍ୟ । ଏଣୁ ଆଜିର ତାରିଖରେ ସାହିତ୍ୟ ସୃଷ୍ଟି କରିବା ପୂର୍ବରୁ ସମାଜକୁ ଚହିଁ ରଖିବା ଏକାନ୍ତ ଆବଶ୍ୟକ ଓ ତାହାହିଁ ସାହିତ୍ୟର ଗତି ନିର୍ଦ୍ଧାରଣରେ ସାହାଯ୍ୟକାରୀ ହେବ ।

ଆଜି ଆମେ ଯେଉଁ ସମାଜରେ ବାସ କରୁଛୁ ସେ ସମାଜର ସମସ୍ୟା ତଥା ଅଭିଜ୍ଞତା ଅତି ଜଟିଳ, ବିଚିତ୍ର ଏବଂ ବ୍ୟାପକ । ବ୍ୟକ୍ତିମାନସ ଆଜି ଆନ୍ତର୍ଜାତୀୟ, ଜାତୀୟ ଏବଂ ପ୍ରାନ୍ତୀୟ ଭେଦରେ ବିବିଧ ଘଟଣା ପ୍ରବାହ ଦ୍ୱାରା ନିୟନ୍ତ୍ରିତ ଓ ପ୍ରଭାବିତ । ଆମକୁ ପ୍ରଭାବିତ କରିଥିବା ଆନ୍ତର୍ଜାତୀୟ ଘଟଣାବଳୀ ମଧ୍ୟରେ ଏ ଶତକର ଦୁଇ ଦୁଇଟି ଭୟଙ୍କର ବିଶ୍ୱଯୁଦ୍ଧ, ରୁଷିଆର ମହାନ୍ ଅକ୍ଟୋବର ବିପ୍ଳବର ସାଫଲ୍ୟ, ଚିନ୍‌ର ସାଂସ୍କୃତିକ ବିପ୍ଳବ, ସାମ୍ରାଜ୍ୟବାଦ ତଥା ଔପନିବେଶିକତାର ବିଲୋପ, ମହାକାଶ ଯାତ୍ରା, ଆଣବିକ ବୋମା ପରୀକ୍ଷା, ହୃତ୍‌ପିଣ୍ଡର ପୁନଃସ୍ଥାପନ ଇତ୍ୟାଦି ଚିକିତ୍ସା ବିଜ୍ଞାନର ଅଗ୍ରଗତି, ପୁଞ୍ଜିବାଦୀ ଓ ସାମ୍ୟବାଦୀ ରାଷ୍ଟ୍ର-ମାନଙ୍କ ମଧ୍ୟରେ ଚାଲିଥିବା ଶୀତଳ ଯୁଦ୍ଧ, ଇତ୍ୟାଦି ବିଭିନ୍ନ କିସମର ଘଟଣାବଳୀ ମୁଖ୍ୟ ।

ପ୍ରଥମେ ଯୁଦ୍ଧର କଥା ବିଚାର କରାଯାଉ । ମାତ୍ର ଏତଦ୍‌ବିଷୟ ଆଲୋଚନା ପୂର୍ବରୁ ଗୋଟିଏ କଥା ମନରେ ରଖାଯାଉ ଯେ, ପାଶ୍ଚାତ୍ୟ ଦେଶବାସୀଗଣଙ୍କର ଯୁଦ୍ଧର ବିଭୀଷିକା ସମ୍ପର୍କୀୟ ଅନୁଭୂତି ଅଗଣିତ; ଓଡ଼ିଆମାନଙ୍କର ନାହିଁ, ଯାହା ଅଛି ତାହା ପରୋକ୍ଷ; କିନ୍ତୁ ଏହି ପରୋକ୍ଷ ପ୍ରଭାବ ଆମର ସାହିତ୍ୟକୁ ପ୍ରଚୁର ଭାବରେ ପ୍ରଭାବିତ କରିଛି । ପାଶ୍ଚାତ୍ୟ ଦେଶବାସୀମାନଙ୍କର ବିଗତ ଯୁଦ୍ଧର ଭୟାନକ ପରିସ୍ଥିତି ସମ୍ପର୍କୀୟ ଅଭିଜ୍ଞତା ଏତେ ତୀବ୍ର ଓ ଉଗ୍ର ଯେ ଈଶ୍ୱର, ଧର୍ମ ଏବଂ ସମାଜର ପ୍ରାଚୀନତମ ରୂଢ଼ିଗୁଡ଼ିକ ଅନାୟାସରେ ବଦଳି ଯାଇ ପାରିଛି । ୧୯୧୪ ମସିହାରୁ ୧୯୧୮ ମସିହା ପର୍ଯ୍ୟନ୍ତ ଏବଂ ୧୯୩୯ ମସିହାରୁ ୧୯୪୫ ମସିହା ପର୍ଯ୍ୟନ୍ତ ସମଗ୍ର ଇଉରୋପୀୟ ଜନମାନସର ଚିନ୍ତନ ଯୁଦ୍ଧ-କୈନ୍ଦ୍ରିକ ଥିଲା । ସେ ସମୟରେ ପ୍ରତ୍ୟେକ ଦେଶ ନିଜେ ନିଜର ସୁରକ୍ଷା ତଥା ବିଜୟ ସମ୍ପର୍କରେ ଅତିଶୟ ଚିନ୍ତିତ ହୋଇ ପଡ଼ିଥିଲେ । ସମଗ୍ର ଇଉରୋପ ରଙ୍ଗମଞ୍ଚ ରକ୍ତରଞ୍ଜିତ ଥିଲା । କେବଳ ରଣକ୍ଷେତ୍ର ନୁହେଁ, ବହୁ ନଗର ଓ ବେସାମରିକ ଅଞ୍ଚଳରେ ବୋମାମାଡ଼ ହେବା ଫଳରେ ଚତୁର୍ଦ୍ଦିଗରେ ଏକ ଅସାଧାରଣ ଭୟାନକ ଆତଙ୍କ ସୃଷ୍ଟି ହୋଇଥିଲା । ବୋମାର ଅବଶ୍ୟମ୍ଭାବୀ ପରିଣତି ଥିଲା ବ୍ୟକ୍ତିର ଅସ୍ତିତ୍ୱ ଲୋପ ଯାହା ଥିଲା ବ୍ୟକ୍ତିର ପ୍ରତିରୋଧ ସାମର୍ଥ୍ୟର ବାହାରେ । ବ୍ୟକ୍ତି ଲକ୍ଷ୍ୟ କରିଥିଲା ଯେ ବୋମାର ବିନାଶରୁ ବ୍ୟକ୍ତିକୁ କୌଣସି ଈଶ୍ୱରୀୟ ସତ୍ତା ସୁରକ୍ଷିତ କରି ପାରୁ ନ ଥିଲା । ଫଳ ହେଲା ଈଶ୍ୱର-ବିଶ୍ୱାସ ଲୋପ ।

ଯୁଦ୍ଧ ହେତୁ ଉକ୍ତ ଦେଶମାନଙ୍କରେ ନୈତିକ ମାନ ହ୍ରାସ ଘଟିଥିଲା । ଯୁଦ୍ଧ ଫେରନ୍ତା କ୍ଷତବିକ୍ଷତ ସୈନିକ ଏବଂ ଯୁଦ୍ଧ ସମୟରେ ବିପଥଗାମୀ ନାରୀମାନଙ୍କ-ଠାରେ ବହୁ ଅସାଧାରଣତା ଦେଖାଯାଇଥିଲା ।

ବିଂଶଶତାବ୍ଦୀର ପ୍ରାରମ୍ଭରେ ପୁଞ୍ଜିବାଦୀ ରାଷ୍ଟ୍ରଗୁଡ଼ିକ ମଧ୍ୟରେ ତୀବ୍ର ପ୍ରତିଯୋଗିତା ଦେଖା ଦେଇଥିଲା । ସେ ସମୟରେ ଇଂଲଣ୍ଡ ଅର୍ଥନୀତି ଦୃଷ୍ଟିରୁ ଥିଲା ଏକମାତ୍ର ସମ୍ପନ୍ନ ଦେଶ । ସମଗ୍ର ପୃଥିବୀରେ ଇଂରେଜମାନେ ଏକଚାଟିଆ ବାଣିଜ୍ୟ କରୁଥିଲେ । ମାତ୍ର ଖୁବ୍ ଶୀଘ୍ର ଜର୍ମାନୀମାନେ ସେମାନଙ୍କର ପ୍ରତିଦ୍ୱନ୍ଦ୍ୱୀ ହୋଇ ଉଠିଲେ । କଠୋର ପରିଶ୍ରମ, ନିଷ୍ଠା ଏବଂ ସାଧୁତା ବଳରେ ଖୁବ୍ ଶୀଘ୍ର ସମଗ୍ର ପୃଥିବୀ ବଜାରକୁ ହସ୍ତଗତ କରିବାକୁ ସମର୍ଥ ହୋଇ ପାରିଥିଲେ । ଇଂରେଜମାନଙ୍କ ଜିନିଷପତ୍ର ତୁଳନାରେ ଜର୍ମାନୀମାନଙ୍କ ଜିନିଷପତ୍ର ଅତି ଶସ୍ତା, ସୁନ୍ଦର ଏବଂ ମଜଭୁତ ହୁଅନ୍ତେ ଜର୍ମାନୀମାନଙ୍କୁ ପୃଥିବୀ ବଜାର କାବୁ କରିବାରେ କୌଣସି ଅସୁବିଧା ହୋଇନଥିଲା । ଇଂଲଣ୍ଡ ଜର୍ମାନୀ ଭିତରେ କ୍ରମବର୍ଦ୍ଧିଷ୍ଣୁ ଅସହିଷ୍ଣୁତା ଯୁଦ୍ଧର ସମ୍ଭାବନା ବଢ଼ାଇ ଦେଇଥିଲା ଓ ଉଭୟ ରାଷ୍ଟ୍ର ନିଜର ସାମରିକ ଶକ୍ତି ଅଭିବୃଦ୍ଧି କରିବାରେ ଯଥେଷ୍ଟ ଉଦ୍ୟମ ଚଳାଇଥିଲେ ।

୧୯୧୪ ମସିହା ଜୁନ୍ ମାସ ୨୮ ତାରିଖ ଦିନ ଅଷ୍ଟ୍ରିୟାର ରାଜକୁମାର ବୋସ୍ନିଆର ସିରାଜେଭୋ ସହରରେ ଏକ ଖୋଲା ଗାଡ଼ିରେ ଗଲା ବେଳେ ନିହତ ହେଲେ ଏବଂ ଏହା ହିଁ କ୍ରମଶଃ ଯୁଦ୍ଧର କାରଣ ହୋଇପଡ଼ିଲା । ପ୍ରଥମ ବିଶ୍ୱଯୁଦ୍ଧ ୫୧ ମାସ ପର୍ଯ୍ୟନ୍ତ ଚାଲିଥିଲା ତଥା ଏହି ଯୁଦ୍ଧରେ ସମଗ୍ର ପୃଥିବୀ ଗୋଟିଏ ପଟରେ ଓ ଏକା ଜର୍ମାନ ଗୋଟିଏ ପଟରେ ଥିଲେ । ଏକୁଟିଆ ଦେଶ ପକ୍ଷରେ ଏହା ଅତି ଦୁଃସାହସ ଥିଲା । ଯାହାହେଉ ଶେଷକୁ ଆମେରିକା ପ୍ରତ୍ୟକ୍ଷ ଯୁଦ୍ଧରେ ଭାଗନେଇ ବିଶ୍ୱଯୁଦ୍ଧର ପରିଣତି ଘଟାଇଥିଲା । ଆମେରିକା ପୂର୍ବରୁ ଅନ୍ୟରାଷ୍ଟ୍ରମାନଙ୍କୁ ବହୁ ଅର୍ଥ ସାହାଯ୍ୟ କରିଥିଲା ମାତ୍ର ଉକ୍ତ ଯୁଦ୍ଧରେ ଜର୍ମାନ ଜିତିଯାଇଥିଲେ ଆମେରିକାର ଏହି ବିପୁଳ ଅର୍ଥର ଭବିଷ୍ୟତ ଅନ୍ଧକାରାଚ୍ଛନ୍ନ ହୋଇଯାଇଥାନ୍ତା ତାହା ହିଁ ଥିଲା ଆମେରିକାର ଏକମାତ୍ର ଧେୟ । ଏଣୁ ୧୯୧୭ମସିହା ଅପ୍ରେଲ ମାସ ଛଅ ତାରିଖ ଦିନ ଆମେରିକା ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲା ।

ଅତି ନାଟକୀୟ ଭାବରେ ଶେଷରେ ଚତୁର୍ଦ୍ଦଶ ସୂତ୍ର 'ଭର୍ସେଲ୍ସ ସନ୍ଧି'ରେ ଏହି ଯୁଦ୍ଧ ଶେଷ ହେଲା । ବସ୍ତୁତଃ ଏହା ଏକ ସନ୍ଧି ନ ଥିଲା ବରଂ ବାଧ୍ୟତାମୂଳକ

ଘାବରେ ଜର୍ମାନକୁ ଯୁଦ୍ଧ ଅପରାଧୀ ବୋଲି ସ୍ୱୀକୃତ କରାଗଲା । ଜର୍ମାନକୁ ନିଜର ସମସ୍ତ ନୌବାହିନୀ ଓ ସାମରିକ ଶକ୍ତି ମିତ୍ର ପକ୍ଷକୁ ହସ୍ତାନ୍ତର କରିବାକୁ ବାଧ୍ୟ କରାଗଲା । ମାତ୍ର ନିଜର ଜାହାଜ ଭେଲାଗୁଡ଼ିକୁ କାର୍ଯ୍ୟକାରୀ ଅବସ୍ଥାରେ ହସ୍ତାନ୍ତର କରିବା ଅପେକ୍ଷା ସେଗୁଡ଼ିକୁ ନଷ୍ଟ କରିଦେବା ଥିଲା ଜର୍ମାନୀମାନଙ୍କ ପକ୍ଷରେ ଶୁଭଙ୍କର ଓ ସେମାନେ ଶେଷକୁ ତାହାହିଁ କଲେ । 'ସ୍କେପାଫ୍ଲୋ' ପ୍ରଣାଳୀରେ ଜାହାଜ ଭେଲାଗୁଡ଼ିକୁ କଣାକରି ବୁଡ଼ାଇ ଦିଆଗଲା । ଜର୍ମାନୀ କଷ୍ଟଦ୍ୱନ୍ଦ ପାଇଁ ବାହ୍ୟ ତଥା ଅନ୍ତଃ (ମାନସିକ) ଅତ୍ୟାଚାର ସହିବାକୁ ବାଧ୍ୟ ହୋଇଥିଲା । ରୁଷିଆର ଅକ୍ଟୋବର ବିପ୍ଳବ ଜର୍ମାନୀମାନଙ୍କ ମନରେ ନୂତନ ପ୍ରେରଣା, ଆଶା ଏବଂ ଉତ୍ସାହ ଭରି ଦେଇଥିଲା । ନାଜି ନେତା ହିଟ୍‌ଲରଙ୍କର ବଡ଼ ବଡ଼ ଆଶ୍ୱାସନା ବାଣୀରେ ଅପମାନିତ ଜର୍ମାନୀ ଜାତିର ମନରେ ଅମାପ ଆତ୍ମବିଶ୍ୱାସ ଦେଖାଦେଲା । ସେତେବେଳେ ସମସ୍ତେ ହିଟଲରଙ୍କର ଜୟ ଜୟକାର କରିବାକୁ ଲାଗିଲେ ।

## ମୁକ୍ତି କାମନା (୨)

ହିଟଲର ଜର୍ମାନୀ ଜାତିର ମନରେ ସେ କେବଳ ଏକ ଭେଳିକ ଲଗାଇବାର ଚେଷ୍ଟା କଲେ ତା ନୁହେଁ, ବରଂ କାର୍ଯ୍ୟରେ ମଧ୍ୟ ସେ ନିଜର ଦୁଃସାହସିକତା ପ୍ରଦର୍ଶନ କଲେ । ୧୯୩୫ରେ ସାରଘାଟିକୁ ଓ ୧୯୩୮ରେ ଅଷ୍ଟ୍ରିଆକୁ ନେଇ ଇହୁଦୀମାନଙ୍କ ଉପରେ ଅମାନୁଷିକ ଅତ୍ୟାଚାର କରିବା ପାଇଁ ଲାଗିଲେ । ପୋଲାଣ୍ଡ ଉପରେ ଆକ୍ରମଣ କଲାବେଳେ ଏକା ସାଙ୍ଗରେ ହିଟଲର ଆଉ କେତେକ ରାଷ୍ଟ୍ରକୁ ମଧ୍ୟ ଆକ୍ରମଣ କଲେ । ଇଂଲଣ୍ଡ ଭୟଭୀତ ହୋଇ ଆମେରିକାର ସାହାଯ୍ୟ ଲୋଡ଼ିଲା ।

ମାର୍କିନ ରାଷ୍ଟ୍ରପତି ରୁଜ୍‌ଭେଲ୍‌ଟ ୧୯୪୧ ମସିହା ମାର୍ଚ୍ଚ ୧୨ ତାରିଖ ଦିନ ଇଂଲଣ୍ଡ ପାଇଁ ୭,୦୦୦,୦୦୦,୦୦୦ ପାଉଣ୍ଡ ମଞ୍ଜୁର କଲେ । ଜର୍ମାନ ସହିତ ଇଂଲଣ୍ଡ ଫଳତଃ ସନ୍ଧି କରିବା ନିମିତ୍ତ ପ୍ରସ୍ତୁତ ହେଲା ନାହିଁ । ୧୯୩୯ ସେପ୍‌ଟେମ୍ବର ୩ ତାରିଖରୁ ୧୯୪୦ ମସିହା ଅପ୍ରେଲ ୯ ତାରିଖ ମଧ୍ୟରେ ୩୩୯ ୦୦୦ ଗ୍ରୋସ ଟନ୍‌ସ୍ ଏବଂ ୧୯୪୦ ଅପ୍ରେଲ ୧୦ ତାରିଖରୁ ୧୭ ମାର୍ଚ୍ଚ ୧୯୪୧ ମଧ୍ୟରେ ୧୬୭୭୦୦୦ ଗ୍ରୋସ୍ ଟନ୍‌ସ୍, ୧୯୪୧ ମାର୍ଚ୍ଚ ୧୪ ତାରିଖରୁ ସେହି ବର୍ଷ ଡିସେମ୍ବର ୭ ତାରିଖ ଭିତରେ ୧,୧୩୪୦୦୦ ଗ୍ରୋସ୍ ଟନ୍‌ସ୍‌ର ଇଂରାଜୀ ବ୍ୟବସାୟୀ

ଜଳପୋତକୁ ଜର୍ମାନୀ ଆଟଲାଣ୍ଟିକ ମହାସାଗରରେ ବୁଡ଼ାଇ ଦେଲା । (Winston Churchill - The Second War, Vol-3 Page 476)

ଇଂଲଣ୍ଡର ରୟାଲ ଏୟାର ଫୋର୍ସ ଦ୍ୱାରା ଭୟଭୀତ ଜର୍ମାନ ଜନତାଙ୍କୁ ଆଶ୍ୱାସନା ଦେଇ ହିଟଲର କହିଥିଲେ, "If the British Air Force drops two or three or four thousand kilograms of Bombs we will drop a hundred and fifty, a hundred and eighty, two hundred thousand, four hundred thousand kilograms and more in a single night. If they say that they will carry out large scale attacks on our cities we will blow-out theirs" (Alan Bullock,— A. Hitler - A Study in Tyranny, Page 581)

ହିଟଲରଙ୍କର ଏହି ଆଶ୍ୱାସନା କଥାରେ ସୀମିତ ନ ରହି କାର୍ଯ୍ୟରେ ପରିଣତ ହେଲା । ଜର୍ମାନର ଜ୍ୟାପ୍‌ଲିନ୍ ଉଡ଼ାଜାହାଜ ଦ୍ୱାରା ଏପରି ବୋମାମାଡ଼ କରାଗଲା ଯେ ଇଂଲଣ୍ଡର ଲୋକମାନେ ଭୀତ ସଂତ୍ରସ୍ତ ହୋଇ ମାଟିତଳ ରେଳବାଇ ଷ୍ଟେସନମାନଙ୍କରେ ଆଶ୍ରୟ ନେଲେ । ଯାହାହେଉ ମାର୍କିନ ଆକାଶବାହିନୀର ପ୍ରତ୍ୟକ୍ଷ କାର୍ଯ୍ୟାନୁଷ୍ଠାନ ଫଳରେ ହିଟଲରଙ୍କ ସମସ୍ତ ଶକ୍ତି ପରାହତ ହେଲା । ଚତୁର୍ଦ୍ଦିଗରୁ ଅବରୁଦ୍ଧ ହୋଇପଡ଼ିବାରୁ ବର୍ଲିନର ପତନ ସମ୍ଭବ ହେଲା ଓ ହିଟଲର ଆତ୍ମହତ୍ୟା କଲେ; କିନ୍ତୁ ଏହା ବିଶ୍ୱଯୁଦ୍ଧର ସମାପ୍ତି ଘଟାଇଲା ନାହିଁ । ଜାପାନ ଆମେରିକାର ପାର୍ଲ ହାର୍ବର ଉପରେ ଆକ୍ରମଣ କଲା । ଏହାର ପ୍ରତିଶୋଧ ନେବା ପାଇଁ ଆମେରିକା ସୁମାତ୍ରା, ସିଙ୍ଗାପୁର ଓ ରେଙ୍ଗୁନର ତେଲକାରଖାନାରେ ନିଆଁ ଲଗାଇ ଦେଲା । ଅଣୁବୋମାର ବିସ୍ଫୋରଣସହ ବିଶ୍ୱଯୁଦ୍ଧର ସମାପ୍ତି ଘଟିଥିଲା । ଆଟମବମ୍ ପ୍ରତି ସମଗ୍ର ବିଶ୍ୱର ଜନତା ଭୟଭୀତ ହୋଇ ପଡ଼ିଲା ।

ବିଶ୍ୱଯୁଦ୍ଧ ସାମାଜିକ ପରିସ୍ଥିତିରେ ଆମୂଳ ପରିବର୍ତ୍ତନ ଆନୟନ କଲା । ଅର୍ଥନୈତିକ ଦୁର୍ଗତି ଓ ରାଜନୈତିକ କ୍ଷେତ୍ରରେ ଆସ୍ଥା ସ୍ଥାପନଗତ ସନ୍ଦେହ ସୃଷ୍ଟି ସହ ସମାଜରେ ନୈତିକତାର ପତନ ଏବଂ କ୍ଷଣବାଦୀ ଭୋଗଲିପ୍ସା ତଥା 'ଶରୀରବାଦୀ ଚିନ୍ତା' ପ୍ରତ୍ୟେକଙ୍କର ମନକୁ ଆଚ୍ଛାଦିତ କରି ବସିଲା ।

ଭାରତୀୟ ବିଶେଷ କରି ଉତ୍କଳୀୟ ଜନମାନସ ଯୁଦ୍ଧର ପ୍ରତ୍ୟକ୍ଷ ପ୍ରଭାବ କର୍ଜରିତ ନୁହେଁ । ତଥାପି ଉତ୍କଳୀୟ ବ୍ୟକ୍ତିମାନସରେ ଯୁଦ୍ଧ ଗଭୀର ରେଖାପାତ ଯେ ନ କରିଥିଲା ଏମିତି ନୁହେଁ, ବରଂ ପରାଧୀନତା, କଠୋର ଶାସନ ଓ ତତ୍‌ସମ୍ପର୍କୀୟ ଅତ୍ୟାଚାର ଓ ଦୈବୀ ଦୁର୍ବିପାକାଦିରେ ଉତ୍କଳୀୟ ଜନମାନସ ନୈରାଶ୍ୟ ଜର୍ଜରିତ ହୋଇ ପଡ଼ିଥିଲା । ଯୁଦ୍ଧର କୁପରିଣତି ନିମିତ୍ତ ଏଲିୟଟ୍‌ଙ୍କ ପାଇଁ ଇଂଲଣ୍ଡ ପୋଡ଼ା ଭୂଇଁ ହେଲାବେଳେ ବନ୍ୟା ଓ ଦୁର୍ଭିକ୍ଷ ପାଇଁ ଗୋପବନ୍ଧୁଙ୍କ ନିମିତ୍ତ ଓଡ଼ିଶା ମଧ୍ୟ ମଡ଼ାଭୂଇଁ ହୋଇଥିଲା ।

ପୁଞ୍ଜିବାଦ ଓ ଯୁଦ୍ଧ ନେତାମାନଙ୍କର ଯୁଦ୍ଧକାଳୀନ ଆଶ୍ୱାସନା ଯେପରି ପାଶ୍ଚାତ୍ୟ ଜନମାନସରେ ଅସୀମ ଆଶା ଜାଗ୍ରତ କରିଥିଲା ଠିକ୍ ସେହିପରି ସ୍ୱାଧୀନତା ଲାଭ, ଭୂଦାନ ଆନ୍ଦୋଳନ ଓ ପଞ୍ଚବାର୍ଷିକ ଯୋଜନା ଆଦି ଆମମାନଙ୍କ ମନରେ ଅମାପ ଆଶା ଜାଗ୍ରତ କରାଇଥିଲା । ପୁଞ୍ଜିବାଦର କୁଫଳ ଏବଂ ଆଲୋଚ୍ୟ ବିଶ୍ୱ-ଯୁଦ୍ଧଦ୍ୱୟ ପାଶ୍ଚାତ୍ୟ ବ୍ୟକ୍ତିମାନସରେ ନୈରାଶ୍ୟ, କାତରତା ଓ ଗ୍ଲାନି ଭରିଦେଲା ପରି ଉତ୍କଳୀୟ ବ୍ୟକ୍ତିମାନସ ସ୍ୱାଧୀନୋତ୍ତର ଉଚ୍ଛୃଙ୍ଖଳତା, ଅଭାବ ଅନାଟନ ଓ ଯୋଜନାର ବିଫଳତା ଆଦି ହେତୁ ନୈରାଶ୍ୟ ଜର୍ଜରିତ ହୋଇ ପଡ଼ିଅଛି ।

ସ୍ୱାଧୀନତା ଲାଭ ନିମିତ୍ତ ଆମକୁ ଅନ୍ୟ ବହୁ ଦେଶ ତୁଳନାରେ ଖୁବ୍ କମ ତ୍ୟାଗ କରିବାକୁ ପଡ଼ିଛି । ଅନ୍ତତଃ ଚରମ ତ୍ୟାଗ ନିମିତ୍ତ ଆମେ ନିଜକୁ ପ୍ରସ୍ତୁତ କରି ନ ଥିଲୁ । ଗାନ୍ଧିଜୀ ସମାଜକୁ ସତ୍ୟ, ଅହିଂସା, ପ୍ରୀତି, ମୈତ୍ରୀ ଓ ସୌହାର୍ଦ୍ଦ୍ୟର ସମାଜ କରିବାର କଳ୍ପନା ବ୍ୟକ୍ତି ମନରେ ଜାଗ୍ରତ କରିବାକୁ ପ୍ରୟାସୀ ହୋଇଥିଲେ; କିନ୍ତୁ ହିନ୍ଦୁ-ମୁସଲମାନ ଦଙ୍ଗା ଥିଲା ଏକାନ୍ତ ବାସ୍ତବ ଘଟଣା । ସେହିପରି ଅସ୍ପୃଶ୍ୟତା ନିବାରଣ କରି ଏକ ସୁସମନ୍ୱିତ ସମାଜ ଗଠନର ଆକାଙ୍କ୍ଷା-ବୀଜ ବ୍ୟକ୍ତି ମନରେ ଅଙ୍କୁରିତ ହେଲାବେଳକୁ ଧନୀ ଓ ନିର୍ଧନର ଆକାଶ ପାତାଳ ତାରତମ୍ୟ ବ୍ୟକ୍ତିକୁ ଆକୃଷ୍ଟ କଲା । ଯୋଜନା ଓ ତତ୍‌ସମ୍ପର୍କୀୟ ସକଳ ଆଶ୍ୱାସନାର ବିପରୀତରେ ପ୍ରତ୍ୟେକ ଦିନ ଗରିବ ଦରିଦ୍ରତର ହେବାକୁ ଲାଗିଲା ।

ଏବଂବିଧ ଦୈନ୍ୟ ଗ୍ଲାନି ଓ କାତରତା ହେତୁ ବ୍ୟକ୍ତି ଭିତରେ ଆତ୍ମ-ସଂଘର୍ଷ ଦେଲା । ଆତ୍ମସଂଘର୍ଷ ହେତୁ ଏକ ଶିଥିଳତା ବା କ୍ଲାନ୍ତି ପ୍ରତ୍ୟେକକୁ ଘେରି ବସିବାକୁ ଲାଗିଲା । ସାମାଜିକ କ୍ଷେତ୍ରରେ ଦେଖା ଦେଇଥିବା ଏ ସମସ୍ତ ବିଘଟନ ସହ

ଆମର ଚିନ୍ତା ପ୍ରତୀକବାଦ, ଅତିବାସ୍ତବବାଦ, ଅଭିବ୍ୟଞ୍ଜନାବାଦ, ଅସ୍ତିତ୍ୱବାଦ ଆଦି ବିଭିନ୍ନ ବୈପ୍ଳବିକ ଦର୍ଶନ ଦ୍ୱାରା ମଧ୍ୟ ପ୍ରଭାବିତ ହୋଇଛି । ଫଳରେ ଆଜି ଆମର ଗଳ୍ପ ରଚନାର ପ୍ରେରକ ଚିତ୍ତବୃତ୍ତି ବା ମନୋଦଶା ହରିହରଙ୍କ ପରି ପ୍ରାଚ୍ୟ ପାଶ୍ଚାତ୍ୟ ଉଭୟ ସଂସ୍କୃତିର ଏ ମିଶ୍ରରୂପ ଗ୍ରହଣ କରିଛି ।

ସ୍ୱାଧୀନତା ଲାଭ, ୧୯୬୨ ମସିହାରେ ଚୀନ ସହ ଯୁଦ୍ଧରେ ଭାରତର ବିପର୍ଯ୍ୟୟ, ଯୋଜନାର ବିଫଳତା, ସମାଜବାଦୀ ସମାଜ ଗଠନ ନିମିତ୍ତ ରାଜନୈତିକ ଆଦର୍ଶ ଗ୍ରହଣ, ବାସ୍ତବ ଜୀବନରେ ପୁଞ୍ଜିବାଦୀ ବ୍ୟବସ୍ଥାର ବିଷମ ଅବସ୍ଥା ହେତୁ ଜଟିଳ ପରିସ୍ଥିତି ସୃଷ୍ଟି ହୋଇଛି । ସ୍ୱାଧୀନତା ଲାଭ ପୂର୍ବରୁ ଗଳ୍ପ ସାହିତ୍ୟରେ ଯେଉଁ ଧରଣର ମୁକ୍ତି କାମନା ଥିଲା ପ୍ରତ୍ୟେକ ବ୍ୟକ୍ତି/ସାହିତ୍ୟିକ ନେତାଙ୍କର ପ୍ରଧାନ ଧ୍ୟେୟ, ତାହା ପରିବର୍ତ୍ତିତ ହୋଇଛି । ସ୍ୱାଧୀନତା ଲାଭ ପୂର୍ବରୁ ଓଡ଼ିଆ ଗଳ୍ପ ସାହିତ୍ୟରେ (୧) ବିଦେଶୀ ଦାସତ୍ୱରୁ (୨) ପାରମ୍ପରିକ ସଂସ୍କାର, ଅନ୍ଧବିଶ୍ୱାସ, ସାମାଜିକ କୁରୀତି ଓ ଅନ୍ଧାନୁକରଣଜନିତ ବ୍ୟକ୍ତି ଚରିତ୍ରର ଦୋଷ ଦୁର୍ବଳତାରୁ ମୁକ୍ତି ଲାଭ କରିବା ଥିଲା ମୁଖ୍ୟ ସ୍ୱର ।



'ଅଧୁନା' ୩ୟ ବର୍ଷ ୩ୟ ସଂଖ୍ୟା
ଅକ୍ଟୋବର ୧୯୭୪
ଏବଂ
୪ର୍ଥ ଓ ୫ମ ସଂଖ୍ୟା
ନଭେମ୍ବର ଓ ଡିସେମ୍ବର ୧୯୭୪

# ସାମାଜିକ ପ୍ରଭାବ
# ଓ ଓଡ଼ିଆ ଗଳ୍ପ-ସାହିତ୍ୟ (୧)

ସେଦିନ ପୁଣି ବାରି ଆସୋସିଏସନରେ ବିଭିନ୍ନ କଥା ପଡ଼ୁ ପଡ଼ୁ ଜଣେଇକ ଭଦ୍ରଲୋକ କହିଲେ ଯେ, ତାଙ୍କ ବିଗତରେ ବାଂଶ ଶତକରେ ଓଡ଼ିଆରେ କେହି ଲେଖକ ଲେଖାଲେଖି କରି ନାହାନ୍ତି । ପ୍ରତ୍ୟେକ ବିଷୟରେ ଯୁକ୍ତି କରିବାର ଚରମ ଓ ପରମ ଅବକାଶ ରହିଥିଲା ପରି ପ୍ରିୟ ଭଦ୍ରଲୋକଙ୍କର ମନ୍ତବ୍ୟ ସମ୍ପର୍କରେ ବହୁ ଯୁକ୍ତି କରାଯାଇପାରେ । ମାତ୍ର ଭଦ୍ରଲୋକ ସାଂପ୍ରତିକ ସାହିତ୍ୟ ଓ ପୂର୍ବରୁ ପାଠ କରିଥିବା କେତେକ ପୁସ୍ତକର ତୁଳନା କରି ଏପରି ଏକ ଧାରଣା ପୋଷଣ କରିଛନ୍ତି । ହୁଏତ ତାଙ୍କ ମନ୍ତବ୍ୟକୁ ଭୁଲ ପ୍ରମାଣିତ କରିବା ପାଇଁ ଏଭଳି ବହୁ ଉଦାହରଣ ସାଂପ୍ରତିକ ସାହିତ୍ୟରୁ ମିଳିପାରେ । ଯାହା ତାଙ୍କ ଆଖିରେ ପଡ଼ିନାହିଁ । ଏଇ ଆଖିରେ ନପଡ଼ିବା କଥାଟି ମଧ୍ୟ ତାଙ୍କର ଦୁର୍ବଳତା ନୁହେଁ ।

କାରଣ ଜଣେଇକ ପୁସ୍ତକ ବିକ୍ରେତା ତାଙ୍କ ନିଜ ପ୍ରତିଷ୍ଠାନ ଦ୍ୱାରା ପ୍ରକାଶିତ ପୁସ୍ତକ ଭିନ୍ନ ଅନ୍ୟ ପ୍ରକାଶକଙ୍କର ବହି ଯୋଗାଇବାର ବରାଦ ପାଇଲେ ଦୋକାନ ଚୌକିରେ ବସି ଉକ୍ତ ବହି ମିଳୁନାହିଁ ବୋଲି କହିବାକୁ ନିତାନ୍ତ ସହଜ ଓ ସ୍ୱାଭାବିକ ମନେ କରନ୍ତି । ବିନୋଦବିହାରୀରେ ଅଗଣିତ ପୁସ୍ତକ ଦୋକାନ ଥିଲେ ମଧ୍ୟ କୌଣସି ଏକ ଦୋକାନରେ ଓଡ଼ିଆରେ ପ୍ରକାଶିତ ସକଳ ବହି ପାଇବାର ସମ୍ଭାବନା ନାହିଁ । ପ୍ରକାଶ ପାଉଥିବା ପୁସ୍ତକଗୁଡ଼ିକର ପ୍ରଚାର ବାବଦ ଖର୍ଚ୍ଚ ନାହିଁ । ପ୍ରଚାର ବିଜ୍ଞାପନରେ ଖର୍ଚ୍ଚ କରିବା ମଧ୍ୟ କି ଆବଶ୍ୟକ । ମାର୍ଚ୍ଚ ୩୧

ତାରିଖର ଷ୍ଟର ପାଞ୍ଚ ଦିନ ପୂର୍ବରୁ ଧମାଧମ୍ ବନ୍ଧ ବନ୍ଦୀ କରି ଦିଆଯାଇପାରେ । ଟଙ୍କା ଲାପ୍‌ସ (Lapse) କରିଯିବ ବୋଲି ଲାଇବ୍ରେରୀ ପାଇଁ "ସହଜ ମ୍ୟାଜିକ ଶିକ୍ଷା" ବହି କିଣି ନେବା ପାଇଁ ଲୋକେ ଆସି ଭିଡ଼ କରନ୍ତି । ଏ ତ ବହି ବେପାର । ପତ୍ରିକା ବେପାର କଥା ତ ବାଟରେ ପଡ଼ି ହାଟରେ ଗଡ଼ୁଛି । ଏଣୁ ପାଠକ କୌଣସି ପ୍ରକାଶିତ ଲେଖା ନ ପଢ଼ି ପାରିଲେ; ତାର ବା କ ଦୋଷ ?

ଯାହାହେଉ ଉପରୋକ୍ତ ଭଦ୍ରବ୍ୟକ୍ତିଙ୍କର ଅଭିଯୋଗର ମର୍ମ ଯେ ଅନେକ ପରିମାଣରେ ସତ୍ୟ, ଏଥିରେ ସନ୍ଦେହ ନାହିଁ । ତାଙ୍କର କହିବା କଥା ଯେ ନିଛକ ଓଡ଼ିଶୀ ସଂସ୍କୃତି, ଓଡ଼ିଶୀ ଜୀବନର ଚିତ୍ର, ଓଡ଼ିଶୀ ଭଙ୍ଗୀରେ ଏବେ ସାହିତ୍ୟରେ ପ୍ରକାଶିତ ହେଉ ନାହିଁ । ଲେଖକ ସମାଜଠାରୁ ଦୂରେଇ ଯାଇ ଏକ ଭିନ୍ନବେଶୀ ଲୋକ ପରି ଯାହା କହୁଛି, ତାହାର ଚଳନ୍ତି ସମାଜ ଉପରେ କୌଣସି ପ୍ରଭାବ ରହୁ ନାହିଁ ।

ଠିକ୍ ଏହିଭଳି ମତ ଦେଇଥିଲେ ଅନ୍ୟ ଜଣେ ଆଇନଜୀବୀ ଭଦ୍ରଲୋକ । ସେ ବହୁ ନାଟକ ରଚନା କରି ଲୋକପ୍ରିୟ ହୋଇଛନ୍ତି । ସାହିତ୍ୟର ପରୀକ୍ଷା ନିରୀକ୍ଷା ନାମକ କ୍ରିୟା ପ୍ରକ୍ରିୟାକୁ ସେ ସେଥିପାଇଁ ଦାୟୀ କରିଥିଲେ ।

ପ୍ରଜାତନ୍ତ୍ର ପ୍ରଚାର ସମିତିର ବିଷୁବମିଳନ ଅବସରରେ ମଧ୍ୟ ଏହି କଥାଟି ଆଲୋଚିତ ହୋଇଥିଲା । ସାହିତ୍ୟର ସାମାଜିକ ପ୍ରଭାବ ସମ୍ପର୍କରେ ମାତ୍ର ଯୋଡ଼ିଏ ମତ ରହିଛି ଯଥା—(୧)ସାହିତ୍ୟ ସାହିତ୍ୟ ପାଇଁ ଉଦ୍ଦିଷ୍ଟ, ସମାଜରେ ପ୍ରଭାବ ପକାଇବା ଏକ ଭିନ୍ନ ଓ ଗୌଣ କଥା । (୨) ସାହିତ୍ୟ ସମାଜରେ ପ୍ରଭାବ ପକାଇ ସମାଜ ଗଠନ କରିବାରେ ସହାୟକ ହେବା ଉଚିତ ।

ପ୍ରଥମ ମତଟି କିନ୍ତୁ ଗ୍ରହଣ - ଯୋଗ୍ୟ ନୁହେଁ । ସାହିତ୍ୟ ସୃଷ୍ଟି ସମାଜ ନିମିତ୍ତ ଉଦ୍ଦିଷ୍ଟ । ସମାଜକୁ ଏହା ନିଶ୍ଚିତ ଭାବେ ପ୍ରଭାବିତ କରିବ, ପ୍ରେରଣା ଦେବ । ସାହିତ୍ୟ ସମାଜର ମାନସିକ ସ୍ଥିତି ଗଠନରେ ସହାୟକ ହେବ । ସମାଜର ଚିନ୍ତା ଚେତନା ସଙ୍ଗଠନ କରିବା କେବଳ ଦାର୍ଶନିକ, ଚିନ୍ତକ ଓ ରାଜନୈତିକ ନେତା-ମାନଙ୍କର କର୍ତ୍ତବ୍ୟ ନୁହେଁ, ସାହିତ୍ୟିକର ମଧ୍ୟ । ଏଣୁ ଇଚ୍ଛାନୁସାରେ ସାହିତ୍ୟ ସୃଷ୍ଟି କରିବା ସାହିତ୍ୟିକର କର୍ତ୍ତବ୍ୟ ନୁହେଁ । ଶ୍ରମିକ, କୃଷକ, ଶିକ୍ଷକ, କିରାଣୀମାନେ ଯେଉଁଭଳି ସମାଜର ଗୋଟିଏ ଗୋଟିଏ କର୍ମ କରି ଚାଲିଛନ୍ତି ସେହିପରି ସଂସ୍କୃତି ଗଠନ କରିବାର ଭାର ସାହିତ୍ୟିକମାନଙ୍କୁ ସମାଜ ଅର୍ପଣ କରିଅଛି ।

ଏଣୁ ସାହିତ୍ୟକର କର୍ମ – ସାହିତ୍ୟ ସୃଷ୍ଟି, ସମାଜର ମଙ୍ଗଳ ପାଇଁ ଅଭିପ୍ରେତ ହେବା କଥା। ଏଣୁ ଯେଉଁଠି ସାହିତ୍ୟିକର କାର୍ଯ୍ୟ ସମାଜ ବିରୋଧୀ ହେବ, ସେଠାରେ ଉକ୍ତ କାର୍ଯ୍ୟ ଉପରେ ସାମାଜିକ ଅନୁଶାସନର ସାହାଯ୍ୟ ନିଆଯିବ। ସାମାଜିକ ଅନୁଶାସନ ଦ୍ୱିବିଧ – ଗୋଟିଏ ପ୍ରତ୍ୟକ୍ଷ, ଅନ୍ୟଟି ପରୋକ୍ଷ। ପ୍ରତ୍ୟକ୍ଷତଃ ଉକ୍ତ ସାହିତ୍ୟକୁ ସରକାର ବାଜ୍ୟାପ୍ତ କରି ପାରନ୍ତି ଓ ପରୋକ୍ଷତଃ ସମାଜରେ କ୍ରମେ ଉକ୍ତ ଲେଖାଟି ବିସ୍ମୃତ/ବାଛନ୍ଦ ହୋଇଯିବ।

ଅନ୍ୟଥା ଭରତ ମୁନିଙ୍କ ପରି 'ନାଟ୍ୟଶାସ୍ତ୍ର' ରଚୟିତା ନିର୍ଦ୍ଦେଶ ଦେବେ ଯେ, ସମାଜ ବିରୋଧୀ ଦୃଶ୍ୟ, ମଦ୍ୟପାନ, ରମଣ, ଚୌର୍ଯ୍ୟବୃତ୍ତି ଇତ୍ୟାଦି ଦୃଶ୍ୟ ନାଟକରେ ସଂଯୋଜିତ ହୋଇ ପାରିବ ନାହିଁ।

ସମାଜ ଉପରେ ସାହିତ୍ୟର ପ୍ରଭାବ ଅବଶ୍ୟ ସ୍ୱୀକାର୍ଯ୍ୟ। ଅପର ପକ୍ଷରେ କେଉଁ ଲେଖକ କେତେ ପ୍ରଭାବ ପକାଇ ପାରିଛନ୍ତି ତାହା ତଉଲିବା ସମ୍ଭବ ନୁହେଁ। ତଥାପି ଆମେ ନିକଟ ଅତୀତର ଅଭିଜ୍ଞତାରୁ ଜାଣିପାରିବୁ ଯେ, ସମାଜ ବ୍ୟବସ୍ଥାର ପରିବର୍ତ୍ତନ ନିମିତ୍ତ ଲେଖକ ମାନଙ୍କର ଅବଦାନ ଯଥେଷ୍ଟ ବେଶୀ। ହିନ୍ଦୀର ବିଶିଷ୍ଟ କଥାକାର ଓ ମୁନ୍‌ସି ପ୍ରେମଚନ୍ଦ୍‌ଙ୍କର ପୁତ୍ର ଅମୃତରାୟ ତାଙ୍କର 'ବିଦ୍ରୋହ ଏବଂ ସାହିତ୍ୟ' ସନ୍ଦର୍ଭରେ ଲେଖିଛନ୍ତି—"୧୭୮୯ ମସିହା ଜୁଲାଇ ୧୪ ତାରିଖ ଦିନ ଯେତେବେଳେ ବ୍ୟାଷ୍ଟାଇଲ ଦୁର୍ଗ ଉପରେ ବିଦ୍ରୋହୀ ଜନତା ଆକ୍ରମଣ କଲେ, ସେ ସମୟରେ ସେମାନଙ୍କ ସାଙ୍ଗରେ ବନ୍ଧୁକ ନେଇ ନା ରୁଷୋ ଥିଲେ ନା ଭଲ୍‌ଟେୟାର ଥିଲେ; କିନ୍ତୁ ଲୋକମାନେ କହନ୍ତି ଯେ ସାମାଜିକ ପରିବର୍ତ୍ତନର ଆବଶ୍ୟକତାକୁ ବାରମ୍ବାର ରେଖାଙ୍କିତ କରି ଜନତାର ମନକୁ ବିପ୍ଳବ ଦିଗରେ ପରିଚାଳିତ କରିବା କାମରେ ସେମାନଙ୍କ ଅବଦାନ ପ୍ରଚୁର।

ଫରାସୀ ରାଷ୍ଟ୍ରବିପ୍ଳବ ପରି ରୁଷିଆର ଅକ୍ଟୋବର ବିପ୍ଳବର ଭୂମିକା ଗଠନ ଦିଗରେ ଗୋଗୋଲ୍, ଗୋଞ୍ଚାରୋଭ୍, ତୁର୍ଗେନେଭ୍, ଚେଖଭ୍, ଡଷ୍ଟୟେଭସ୍କି, ଟଲ୍‌ଷ୍ଟୟ, ଗୋର୍କି ପ୍ରମୁଖଙ୍କ ଅବଦାନ ସ୍ୱୀକାର କରାଯାଇଥାଏ। ଚୀନ ବିପ୍ଳବ ସହ ଲୁ ସୁନ, କ୍ୟୁବା ବିପ୍ଳବ ସହ ଆନ୍ଦ୍ରେ ମାର୍ତ୍ତୀ, ହଙ୍ଗେରୀର ମୁକ୍ତି ଆନ୍ଦୋଳନ ସହ କବି ସାନ୍ଦୋର ପେଟୋଫୀଙ୍କ ନାମ ସଂଯୁକ୍ତ କରାଯାଇଥାଏ।

ଜାପାନର ଲେଖକଗଣ ସମସାମୟିକ ସମାଜର କାଠଦ୍ୱଂଷ୍ଟ୍ର ଅଥବା ବ୍ୟବସ୍ଥା ବିରୁଦ୍ଧରେ ପ୍ରତିବାଦର ସ୍ୱର ଉତ୍ତୋଳନ କରି ଆତ୍ମାହୁତି ଦେଅନ୍ତି । ପ୍ରେମଚନ୍ଦଙ୍କଠାରୁ ଆରମ୍ଭ କରି ଭଗବତୀ ଚରଣ ପାଣିଗ୍ରାହୀ, ଗୁରୁଚରଣ ପଟ୍ଟନାୟକ, ଅନନ୍ତ ପଟ୍ଟନାୟକ ପ୍ରଭୃତି ଲେଖକଗଣ ଜନତାର ଆନ୍ଦୋଳନ ସଙ୍ଗେ ସାମିଲ ହେବାକୁ ଆଗେଇ ଆସନ୍ତି । ଗୁଜୁରାଟରେ ବିଶିଷ୍ଟ ଶିକ୍ଷାବିତ୍ ଓ ଗୁଜୁରାଟ ବିଶ୍ୱବିଦ୍ୟାଳୟର ପୂର୍ବତନ ଉପକୁଳପତି ଉମାଶଙ୍କର ଯୋଷୀ ଓ ବିହାରର ଫଣୀଶ୍ୱର ନାଥ 'ରେଣୁ' ପ୍ରମୁଖ ଜନ ଆନ୍ଦୋଳନରେ ନେତୃତ୍ୱ ନିଅନ୍ତି । ଏଭଳି ଏକ ଲମ୍ବା ତାଲିକା କରାଯାଇ ପାରେ । ଏଣୁ କଥା ହେଉଛି ଯେ, ପ୍ରତ୍ୟେକ ବିପ୍ଳବରେ, ପ୍ରତ୍ୟେକ ଗଣ ଆନ୍ଦୋଳନରେ ଲେଖକମାନଙ୍କର ଭୂମିକା ମହତ୍ତ୍ୱପୂର୍ଣ୍ଣ । ସେ ପରିପ୍ରେକ୍ଷୀରେ ସାମ୍ପ୍ରତିକ ଓଡ଼ିଆ କଥା ସାହିତ୍ୟ ବିଚାର୍ଯ୍ୟ ।



'ଅଧୁନା' ୩ୟ ବର୍ଷ : ନବମ ସଂଖ୍ୟା
ମଇ, ୧୯୭୫

# ସାମାଜିକ ପ୍ରଭାବ ଓ ଓଡ଼ିଆ ଗଳ୍ପ-ସାହିତ୍ୟ (୨)

ସାମାଜିକ ବିପ୍ଳବ ଓ ଓଡ଼ିଆ ସାହିତ୍ୟିକଙ୍କ ସମ୍ପର୍କରେ ଆଲୋଚନା କରିବାକୁ ଯିବା ପୂର୍ବରୁ ସାମାଜିକ ବିପ୍ଳବ ସମ୍ପର୍କରେ ଆଉ କିଛି କହି ରହି ରଖିବା ପ୍ରାସଙ୍ଗିକ ମନେ କରୁଛି । ସାମାଜିକ ବିପ୍ଳବ ସରକାର ବିରୁଦ୍ଧରେ ବିପ୍ଳବ ବୋଲି ମନେ ନ କରିବା ଉଚିତ । କାରଣ ସରକାର ବହୁ ସମୟରେ ସାମାଜିକ ବିପ୍ଳବ ସଂଘଟିତ କରାଇଥାନ୍ତି । ଲର୍ଡ ଡାଲହାଉସି ନରବଳି ଓ ସତୀଦାହ ପ୍ରଥା ଉଚ୍ଛେଦ କରିବାକୁ ଯେଉଁ ଉଦ୍ୟମ କରିଥିଲେ ତାହା ମଧ୍ୟ ସାମାଜିକ ବିପ୍ଳବର ଅନ୍ତର୍ଭୁକ୍ତ । ମୁସ୍ତାଫା କାମାଲ ପାଶାଙ୍କ ତୁର୍କୀର ସର୍ବାଙ୍ଗୀନ ଉନ୍ନତି ନିମିତ୍ତ ପ୍ରଚେଷ୍ଟା ମଧ୍ୟ ଏହାର ଅନ୍ତର୍ଭୁକ୍ତ । ଏଣୁ ପ୍ରତ୍ୟେକ ସାହିତ୍ୟିକ ଏବଂ ବିଧ ସାମାଜିକ ବିପ୍ଳବର ବାଣୀକୁ ଜନଗଣ ନିକଟରେ ପହଞ୍ଚାଇବାର ଗୁରୁଦାୟିତ୍ୱ ବହନ କରିବା ଉଚିତ ।

ଆମ ସାହିତ୍ୟର ବଡ଼ ଅସୁବିଧା ହେଉଛି ଯେ ସାହିତ୍ୟିକମାନେ ସାମାଜିକ ସମସ୍ୟା ପ୍ରତି ଜନତାରେ ଦୃଷ୍ଟି ଆକର୍ଷଣ କରିବା ଦିଗରେ ନିସ୍ପୃହ । ସେମାନଙ୍କର ନିସ୍ପୃହତା ଯୋଡ଼ିଏ ଦିଗରୁ ଆଲୋଚନା କରାଯିବା ଉଚିତ, ଯଥା ସାହିତ୍ୟିକଙ୍କର ସାମାଜିକ ସ୍ଥିତି ଓ ବ୍ୟକ୍ତିସତ୍ତା ଦିଗରୁ ଓ ସାହିତ୍ୟ ସୃଷ୍ଟିରୁ । ଓଡ଼ିଆ ସାହିତ୍ୟରେ ଏଭଳି କେତେକ ସାହିତ୍ୟିକ ଅଛନ୍ତି ଯେଉଁମାନେ ସମାଜର ବିରାଟ ଅଂଶଠାରୁ ବିଚ୍ଛିନ୍ନ ଓ ସମାଜର ସଂଖ୍ୟାଧିକ ଶ୍ରେଣୀର ସ୍ୱାର୍ଥ ବିରୋଧୀ ଶ୍ରେଣୀ

ସମ୍ପୃକ୍ତ । ଅର୍ଥାତ୍ ବହୁ ସାହିତ୍ୟିକ ନଗରବାସୀ ଓ କଟକ କିମ୍ବା ଭୁବନେଶ୍ୱର ଆଦି ପ୍ରଥମ ଶ୍ରେଣୀର ସହରରେ ବାସ କରନ୍ତି । ସମଗ୍ର ଭାରତରେ ମାତ୍ର ଶତକଡ଼ା ଆଠ ଜଣ ସହରରେ ରହନ୍ତି । ଓଡ଼ିଶା କଥା କ'ଣ କହିବା ? ଏଣୁ ଆଠ/ ଦଶଆରୁ ନେଇ ରହିଥିବା ସହରୀ ସାହିତ୍ୟିକମାନେ ସଂଖ୍ୟାଲଘୁ ଶ୍ରେଣୀର ଚିନ୍ତା ଓ ଚେତନା ଦ୍ୱାରା ପରିପୁଷ୍ଟ । ପ୍ରକାଶନ ମଧ୍ୟ ।

ସାମ୍ପ୍ରତିକ ସାହିତ୍ୟର ଜଣେ ବଶିଷ୍ଟ ଗଳ୍ପ ଲେଖକ ହେଉଛନ୍ତି କୃଷ୍ଣପ୍ରସାଦ ମିଶ୍ର । ଗାଳ୍ପିକ କୃଷ୍ଣ ପ୍ରସାଦ ଜଣେ ଉଚ୍ଚ ଡ଼ିଗ୍ରୀଧାରୀ ବ୍ୟକ୍ତି । ଜଣେ ବୃଦ୍ଧିଜୀବୀ ରୂପେ ମଧ୍ୟ ତାଙ୍କର ସାମାଜିକ ପ୍ରତିପତ୍ତି ରହିଛି । କାନାଡ଼ା ପରି ଏକ ପୁଞ୍ଜିବାଦୀ ରାଷ୍ଟ୍ର ଦର୍ଶନର ସୌଭାଗ୍ୟ ସେ ପାଇଛନ୍ତି । ବାହାରୁ ଦେଖିଲେ ଗାଳ୍ପିକ କୃଷ୍ଣପ୍ରସାଦଙ୍କର ଚିନ୍ତା ଓ ଚେତନା (୧) ସହର ଚାକଚକ୍ୟରେ ବିମୋହିତ ହେବା (୨) ସଂଖ୍ୟା ଲଘୁ ଉଚ୍ଚ ମଧ୍ୟବିତ୍ତ ଧନିକ ଶ୍ରେଣୀର ଚିନ୍ତାଦ୍ୱାରା ପ୍ରଭାବିତ ହେବା (୩) ପୁଞ୍ଜିବାଦ ଦ୍ୱାରା ଆକୃଷ୍ଟ ହେବା, ବହୁତ ସମ୍ଭବ ବୋଲି ମନେ କରାଯିବା ସ୍ୱାଭାବିକ ।

ଗାଳ୍ପିକ କୃଷ୍ଣପ୍ରସାଦଙ୍କର ବ୍ୟକ୍ତି ସତ୍ତା ସମ୍ପର୍କରେ ବାହାରୁ ଏହି ଯେଉଁ ଧାରଣା ହୁଏ, ତାହାର ସତ୍ୟତା ସମ୍ପର୍କରେ ତାଙ୍କ ଗଳ୍ପଗୁଡ଼ିକୁ ଆଲୋଚନା କରାଯାଇ ପାରେ । ଆଲୋଚନା ଏହି ଦୃଷ୍ଟିରୁ ଆବଶ୍ୟକ ଯେ (କ) ସମାଜର ପ୍ରକୃତ ସତ୍ୟକୁ ଉଦ୍‌ଘାଟନ କରିବା (ଖ) ଉକ୍ତ ସତ୍ୟାନୁସନ୍ଧାନ ପରେ ସାମାଜିକ ସମସ୍ୟା ଗୁଡ଼ିକର ସଠିକ ମୂଲ୍ୟାୟନ କରିବା (ଗ) ସାମାଜିକ ସମସ୍ୟା ପ୍ରତି ସମ୍ପୃକ୍ତି ଅବାହିତ ରହି ଉକ୍ତ ସମସ୍ୟାର ସାହିତ୍ୟିକ ସମାଧାନ ବା ସାମାଜିକ ବିପ୍ଳବ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ ଦେବାରେ ତାଙ୍କର ଗଳ୍ପଗୁଡ଼ିକ ସମର୍ଥ କି ନୁହେଁ ଜାଣିବା ଏକାନ୍ତ ଆବଶ୍ୟକ । ତଦୁପରି ତାଙ୍କ ଗଳ୍ପଗୁଡ଼ିକ ସଂଖ୍ୟାଗୁରୁ ବା ସଂଖ୍ୟାଲଘୁ କେଉଁ ଶ୍ରେଣୀର ଚିନ୍ତା ଓ ଚେତନାକୁ ନେଇ ପରିପୁଷ୍ଟ ତାହା ପରଖି ହେବ । ସାହିତ୍ୟିକର ସାମାଜିକ ଦାୟିତ୍ୱବୋଧ ଦୃଷ୍ଟିରୁ ଗାଳ୍ପିକ କୃଷ୍ଣପ୍ରସାଦ କେତେଦୂର ନିଜର କର୍ତ୍ତବ୍ୟ ସମ୍ପାଦନ କରିଛନ୍ତି ତାହା ବିଚାର କରାଯିବା ଦରକାର । ସମାଜର ସମସ୍ୟା ପ୍ରତି ସେ କେତେଦୂର ସଚେତନ ଓ ଉକ୍ତ ସମସ୍ୟାର ସମାଧାନ ଦିଗରେ ସେ କେତେଦୂର ଚିନ୍ତାଶୀଳ ତଥା ତାଙ୍କର ଚିନ୍ତା ସଂଖ୍ୟାଲଘୁ ଧନିକ ବା ଉଚ୍ଚମଧ୍ୟବିତ୍ତ ଶ୍ରେଣୀର ସ୍ୱାର୍ଥ ସଂରକ୍ଷକ ଚିନ୍ତା କି ନୁହେଁ —ତାହାହିଁ ଦେଖିବା କଥା ।

ଏହି ପତ୍ରପ୍ରେଷୀରେ ଗାଲ୍ଭିକ କୃଷ୍ଣପ୍ରସାଦଙ୍କର ନିକଟରେ ପ୍ରକାଶିତ "ଭୃଗୁସଂହିତା"ର କଥା ଧରାଯାଉ । ଆଲୋଚ୍ୟ ଗଳ୍ପ ପୁସ୍ତକରେ ସର୍ବମୋଟ ବାଇଶିଟି ଗଳ୍ପ ସନ୍ନିବିଷ୍ଟ ଏବଂ ତନ୍ମଧ୍ୟରୁ ପାଞ୍ଚୋଟି ଗଳ୍ପ ଯଥା ; ବାତ୍ୟା, ଝିଅ, ତୈମୁର ଅଶ୍ୱାରୋହୀ, ବିମାନ ଯାତ୍ରାର ବିପଦ ଆଦି କ୍ଷୁଦ୍ରଗଳ୍ପ ଭିନ୍ନ ଅନ୍ୟ ଏକ ଶ୍ରେଣୀର (ଏଭଳି କହିବାକୁ ଯେପରି କେହି ଭୃଗୁସଂହିତାର ମୁଖବନ୍ଧ ପୃଷ୍ଠା "ଖ"ର ୨ୟ ପାରାର ପ୍ରଥମ କେଉ ଧାଡ଼ିକୁ ପୁନର୍ବ୍ୟବହାର କରିବାକୁ ଚେଷ୍ଟା ନକରନ୍ତୁ) କସ୍‌ମୋପଲିଟାନିଜମ୍ ଫୁଟାଇବାକୁ ଯାଇ ଯେଉଁ ଛଅୋଟି ଗଳ୍ପ ଏହି ପୁସ୍ତକରେ ସନ୍ନିବିଷ୍ଟ ତହିଁରୁ 'ପଲସୀ ଅବସାନେ', 'ମାଛ' ଇତ୍ୟାଦି ଗଳ୍ପରେ କେବଳ ବିଦେଶର ରାସ୍ତାଘାଟ ଦୋକାନ ବଜାରର ଚିତ୍ର ଦିଆ ଯାଇଛି । ତାହା କେବଳ ପ୍ୟାଣ୍ଟ କୋଟ ପିନ୍ଧି, ବିଅର ବ୍ରାଣ୍ଡି ଖାଇ ମଉଜ କରୁଥିବା କୌଣସି ଏକ ଓଡ଼ିଆ ଗାଁର ଯୁବକର ଫରେନାଇଜେସନ ସଙ୍ଗେ ତୁଳନୀୟ କସମୋପଲିଟାନିଜମ୍‌ର ପରିପ୍ରକାଶ ମାତ୍ର ।

ସମଗ୍ର ସଂକଳନରେ ଆମ ସମାଜର ସମସ୍ୟାକୁ କେନ୍ଦ୍ରକରି ରଚିତ ଗଳ୍ପ କେତୋଟି ହେଉଛି "ଜୀବଣବର," "ବନ୍ଧ," "ଜଣେ ଗୁରୁଙ୍କର ଉଦୟ," "ନିର୍ଭୁଜ" ଏହି ଗଳ୍ପଟିକ ସମାଜର ସମସ୍ୟାକୁ ଫୋକସ କରି ଲିଖିତ । 'ଜୀବଣବର'ର ମୂର୍ତ୍ତି ଚୋରୀ, 'ବନ୍ଧ'ରେ ମଧ୍ୟବିତ୍ତର ଅର୍ଥାଭାବ; 'ଜଣେ ଗୁରୁଙ୍କର ଉଦୟ'ରେ ସାମ୍ପ୍ରତିକ ଯୁବ ସମସ୍ୟା ଏବଂ 'ନିର୍ଭୁଜ'ରେ ବ୍ୟବସାୟୀମାନଙ୍କ ଦ୍ୱାରା ବିଦେଶାଗତ ବାତ୍ୟାଦୁର୍ଗତଙ୍କ ନିମିତ୍ତ ଉଦ୍ଦିଷ୍ଟ କମ୍ବଳ ଚୋରୀ ଇତ୍ୟାଦି ସମସ୍ୟା ଉତ୍‌ଥାପିତ । ମାତ୍ର କୌଣସିଟି ଗଳ୍ପ କରୁଣ ରସ ଉଦ୍ରେକ କରିବାରେ ସମର୍ଥ ନୁହେଁ ବା ଉକ୍ତ ସମସ୍ୟାର ସମାଧାନ ନିମିତ୍ତ ଜନଗଣଙ୍କୁ ଉଦ୍‌ବୁଦ୍ଧ କରାଇବାର ଶକ୍ତି ସେଗୁଡ଼ିକର ନାହିଁ । ବରଂ ଗଳ୍ପଗୁଡ଼ିକ ଏକ ସମ୍ବାଦପତ୍ରୀୟ ବିବରଣୀ ପରି ।

ଗାଲ୍ଭିକ କୃଷ୍ଣ ପ୍ରସାଦଙ୍କର ଆଉ କେତୋଟି ଗଳ୍ପ ସମ୍ପର୍କରେ କିଛି କୁହାଯାଉ । ୧୯୭୨ ମସିହାରେ ପ୍ରକାଶିତ "ଝିଲଦାସୀର କାବ୍ୟ" ପୁସ୍ତକରୁ କେତୋଟି ଗଳ୍ପ କଥା ଧରାଯାଉ । ଉକ୍ତ ପୁସ୍ତକରେ ସନ୍ନିବେଶିତ ଗଳ୍ପ ଗୁଡ଼ିକ ଲେଖକ ଭୁବନେଶ୍ୱର, ବି. ଜେ. ବି. ମହାବିଦ୍ୟାଳୟରେ କର୍ମନିଯୁକ୍ତ ଥିବା ବେଳେ ଲେଖିଛନ୍ତି ଓ ଗଳ୍ପ କେବଳ ମନୋରଞ୍ଜନ ନିମିତ୍ତ ଅଭିପ୍ରେତ ନୁହେଁ ବରଂ "ଯଥାର୍ଥ ଜୀବନ ପ୍ରତିବିମ୍ବିତ" ( ମୁଖବନ୍ଧ-ପୃ. ୯) କରିବାକୁ ଉଦ୍ଦିଷ୍ଟ ବୋଲି

ସ୍ୱୀକାର କରିଛନ୍ତି । ଏହି ସାହିତ୍ୟାଦର୍ଶ ପ୍ରତି "ବିଶ୍ୱସ୍ତ" ଓ "ନିରପେକ୍ଷ" ରହି ନୂଆ ପୁରୁଣା ଉଭୟ ଭୁବନେଶ୍ୱରକୁ କେନ୍ଦ୍ର କରି ଗଳ୍ପ ଗୁଡ଼ିକ ଲେଖିଛନ୍ତି । କେତେକ ଗଳ୍ପରେ 'ଅନୁଭୂତି ପରିସରକୁ ଅସିଥିବା କୁଶ୍ରୀତକୁ ବ୍ୟଙ୍ଗ କରିଛନ୍ତି ତ ଆଉ କେତେକରେ "ମାନସ ସମୁଦ୍ରର ଅତଳାତଳ ଶଯ୍ୟାକୁ ସ୍ପର୍ଶ କରିବାକୁ ଚେଷ୍ଟା" କରିଛନ୍ତି । "ଆଧୁନିକ ସମାଜ କିପରି ପୂର୍ଣ୍ଣାଙ୍ଗ ବ୍ୟକ୍ତିତ୍ୱ ସୃଷ୍ଟି କରିବାକୁ ଅକ୍ଷମ ତାହାର ଆଭାସ ଦେଇଛନ୍ତି । ଲେଖକଙ୍କର ଗଳ୍ପ ଲେଖାର ତିନୋଟି ବିଭାବ ହେଉଛି ଯଥା (୧) ବାସ୍ତବବାଦୀ ସାହିତ୍ୟାଦର୍ଶ ଗ୍ରହଣ, (୨) ଉପସ୍ଥିତ ସାମାଜିକ ପରିସ୍ଥିତିରେ ବ୍ୟକ୍ତିର ଅନ୍ତରାଣ ସ୍ୱରୂପ ଉଦ୍‌ଘାଟନ (୩) ସାହିତ୍ୟର ନାନ୍ଦନିକ ମୂଲ୍ୟବୋଧ ପ୍ରତି ସଚେତନତା ।

ସାମ୍ପ୍ରତିକ ତଥା ସାହିତ୍ୟର ସାମାଜିକ ପ୍ରଭାବ ଶୀର୍ଷକ ଆଲୋଚନା ନିମିତ୍ତ କୃଷ୍ଣପ୍ରସାଦଙ୍କ ବାସ୍ତବବାଦୀ ସାହିତ୍ୟାଦର୍ଶ ସମ୍ପର୍କରେ ଗୋଟିଏ ପ୍ରଶ୍ନ ପଚରା ଯିବାକୁ ବାଧ୍ୟ ଯେ ୧୯୬୨ ମସିହାର ଭାରତରେ ଓଡ଼ିଶାର ରାଜଧାନୀରେ ଲେଖକ ଯେଉଁ ବାସ୍ତବବାଦୀ ସାହିତ୍ୟାଦର୍ଶ ଗ୍ରହଣ କରିଛନ୍ତି ତାହା କେଉଁ ଶ୍ରେଣୀର— ପୁଞ୍ଜିବାଦୀ ନା ସମାଜବାଦୀ ? କାରଣ ଅଷ୍ଟାଦଶ ଶତକରେ ପୁଞ୍ଜିବାଦର ଅଭ୍ୟୁଦୟ ସମୟରେ ଡାନିୟେଲ ଡିଫୋ, ରିଚାର୍ଡସନ ଓ ଫିଲ୍‌ଡିଙ୍ଗ ପ୍ରମୁଖ ଯେଉଁ ବାସ୍ତବବାଦର ମୂଳଭିତ୍ତି ସ୍ଥାପନ କରିଥିଲେ ତାହା ଆଦର୍ଶୋନ୍ମୁଖ ପୁଞ୍ଜିବାଦୀ ବାସ୍ତବବାଦୀ ତଥା ତାହା ସମାଜବାଦୀ ସମାଜ ଗଠନର ଆଧାର ସ୍ୱରୂପ ଦ୍ୱନ୍ଦ୍ୱମୂଳକ ତଥା ଐତିହାସିକ ବସ୍ତୁବାଦର ବିରୋଧ କରିଥାଏ ।

ଏଣୁ ଏହି ଶ୍ରେଣୀର ସମନ୍ୱୟ ଧର୍ମୀ ବାସ୍ତବବାଦୀ ଚିନ୍ତାଧାରା ୧୯୬୨ ମସିହାରେ ସମାଜବାଦୀ ଢାଞ୍ଚାରେ ସମାଜ ଗଠନ ନିମିତ୍ତ ଯତ୍ନଶୀଳ ଭାରତ ପ୍ରତି ଶତ୍ରୁତା ଆଚରଣ କରିଅଛି ମାତ୍ର । ଡିଫୋ, ଫିଲ୍‌ଡିଙ୍ଗଙ୍କର ବାସ୍ତବବାଦର କ୍ରମ ପରିଣତି ହେଉଛି ଆମେରିକାର ଉଇଲିୟମ ଟେନିସି ଆଦି ଲେଖକଙ୍କର **Sensationalism** ବା ଉତ୍ତେଜନାବାଦ । ୧୯୬୨ ମସିହାର ଭାରତୀୟ ଲେଖକ ଡିଫୋ, ଫିଲ୍‌ଡିଙ୍ଗ, ଲରେନ୍‌ସ୍ ବା ଟେନିସିଙ୍କ ବାସ୍ତବବାଦୀ ସାହିତ୍ୟାଦର୍ଶ ଗ୍ରହଣ କଲେ ସମାଜ ବିରୋଧୀ ହେବେ ନିଁ ହେବେ । ୧୯୬୨ ମସିହାର ଭାରତୀୟ ସମାଜ ଅର୍ଥ — ରାଜନୈତିକ ସ୍ତରରେ ସମାଜବାଦୀ ଢାଞ୍ଚାର ସମାଜର ରୂପ ନେବାକୁ ଚେଷ୍ଟିତ ଥିଲା, କାରଣ ତହିଁରେ ଭାରତର ସାମଗ୍ରିକ ବିକାଶ ସମ୍ଭବପର ବୋଲି ମନେ କରାଯାଉଥିଲା ।

ଉକ୍ତ ଚେଷ୍ଟା ଏ ସମ୍ପାଦକୀୟ ଲେଖିଲା ବେଳକୁ ସମ୍ପତ୍ତି ବଣ୍ଟନ ମାଧ୍ୟମରେ ପରିଣତ ହେବାକୁ ଭାରତ ଆଗେଇ ଚାଲିଛି ତଥା ସ୍ୱୟଂ ଗାନ୍ଧିଜୀଙ୍କର ବୌଦ୍ଧିକ ସ୍ଥିତି ସମଗ୍ର ଭାରତୀୟ ଜନତାର ଚିନ୍ତା ଦ୍ୱାରା ସ୍ପୃଷ୍ଟ। ଏଣୁ ତାଙ୍କଠାରୁ ସମାଜ ଦାୟିତ୍ୱବୋଧ ହିଁ ଆଶା କରୁଥାଏ। ଏହି ଦାୟିତ୍ୱବୋଧ ସମାଜ ଗଠନ ନିମିତ୍ତ ଭାରତୀୟ ଜନଗଣଙ୍କ ଦ୍ୱାରା ଅନୁସୃତ ପନ୍ଥାର ବିରୋଧୀ ହୋଇ ନ ପାରେ। ଏଣୁ ୧୯୬୨ ମସିହାରେ କୃଷ୍ଣ ପ୍ରସାଦ ଲେଖିଥିବା ଗଳ୍ପ ଗୁଡ଼ିକରେ ସମାଜବାଦୀ ବାସ୍ତବବାଦୀ ଚିନ୍ତାଧାରା ହିଁ ଆଶା କରାଯିବାକୁ ବାଧ୍ୟ। ଅନ୍ୟଥା ତାଙ୍କ ଗଳ୍ପର ସମାଜ ଉପରେ ପ୍ରଭାବ ନ ରହିବା ବା କୁପ୍ରଭାବ ପଡ଼ିବା ସ୍ୱାଭାବିକ।

କିନ୍ତୁ ଦୁଃଖର କଥା କୃଷ୍ଣପ୍ରସାଦଙ୍କ ବହୁ ଗଳ୍ପରେ ସମାଜବାଦୀ ସମାଜ ଗଠନ ନିମିତ୍ତ ଆବଶ୍ୟକୀୟ ମନୋବୃତ୍ତି ପ୍ରକାଶ ପାଇ ନାହିଁ। ପ୍ରଥମେ 'ଶୂଦ୍ରକର ପ୍ରଶ୍ନ' ଗଳ୍ପଟି ଆଲୋଚନା କରାଯାଉ। ଆଲୋଚ୍ୟ ଗଳ୍ପର ନାୟକ ଜଣେ ସ୍ୱଳ୍ପ ଆୟ ଗୋଷ୍ଠୀର ଚତୁର୍ଥ ଶ୍ରେଣୀ କର୍ମଚାରୀ ଓ ସେ ତା ଘର ଆଗରେ ରାସ୍ତା ସେପଟେ ରହୁଥିବା ମୋଟା ଦରମା ପାଉଥିବା ପରିବାର ସମ୍ପର୍କରେ ଏକ ଉଦ୍ଭଟ ପ୍ରଶ୍ନ ପଚାରୁଛି; ଠିକ୍ ଯେପରି ନାବିକ ସିନ୍ଦବାଦ ପଚାରୁଥିଲା, 'କେଉଁ ପାପ ଯୋଗୁ ମୁଁ ଓ କେଉଁ ପୁଣ୍ୟ ଯୋଗୁ ସେମାନେ ?' ଶୂଦ୍ରକ କେବଳ ପ୍ରଶ୍ନ ପଚାରିଛି ମାତ୍ର। ଏହିଭଳି ଅର୍ଥନୈତିକ ବୈଷମ୍ୟର ବିଲୋପ ସାଧନ ପାଇଁ ନା ସେ ସିନ୍ଦବାଦ ପରି ନୌଯାତ୍ରା କରୁଛି, ଅକ୍ଳାନ୍ତ ପରିଶ୍ରମ କରୁଛି ନା ସକ୍ରିୟ ବିଦ୍ରୋହ କରି ପାରୁଛି।

ଏହି ସାମାଜିକ ସମସ୍ୟାର ସମାଧାନ ନିମିତ୍ତ ଲେଖକଙ୍କର କୌଣସି ବାର୍ତ୍ତା ନାହିଁ ବରଂ ଶୂଦ୍ରକ ଧନୀ ପରିବାରର ଅଯୁଧନନ୍ଦିନୀ, ଅପରୂପ ଲାବଣ୍ୟ ସମନ୍ୱିତା ମହାର୍ଘ-ଅଳଙ୍କାର ବିଭୂଷିତା ମଧ୍ୟଯୁଗୀୟା ମନୋରମାଙ୍କର ଶାରୀରିକ ଉଷ୍ଣତା ପ୍ରତି ଈର୍ଷା-କାତର ଓ ଆକାଙ୍କ୍ଷିତ ହୋଇଛି। ସେ କଳ୍ପନା କରୁଛି, ସ୍ୱପ୍ନ ଦେଖୁଛି, ରାତି ରାତି ଅନିଦ୍ରା ରହି ଯୋଜନା କରୁଛି ଏବଂ ପରିଶେଷରେ ତାର କଳ୍ପନାକୁ କାର୍ଯ୍ୟରୂପ ଦେଉଥିବା ବ୍ୟକ୍ତିର ସାହସ ଦେଖି ଆନନ୍ଦିତ ହୋଇଛି। ବରଂ ଏକ ଲୋକ ଗହଳ ରାସ୍ତାରେ ମନୋରମାଙ୍କର ଅନାହୂତ ଅଙ୍କସିଂକ ନିକଟ ସାନ୍ନିଧ୍ୟରେ ଶୂଦ୍ରକ ଲଳିତ ବିକୃତ ମାନସିକ ତୃପ୍ତି ଲାଭ କରି ଦେଇ ନିଜର ପୁଞ୍ଜିବାଦୀ ଅବକ୍ଷୟୀ ମନୋବୃତ୍ତି ହିଁ ପ୍ରକାଶିତ କରିଛି।

ଅସୁନ୍ଦରୀ "ସୀନା ମା" ଓ ସୁନ୍ଦରୀ 'ମନୋରମା'ଙ୍କର ତୀର୍ଯ୍ୟକ ସ୍ଥିତି (Juxtaposition) ବୈଷମ୍ୟ ରୂପକ ସାମାଜିକ ସମସ୍ୟା ପ୍ରତି ପାଠକଙ୍କ ମନରେ ଏକ ଆପେକ୍ଷିକ ଅନିର୍ଦ୍ଦିଷ୍ଟ ଧୂମାଳ ଚେତନା ଜାଗ୍ରତ କରାଇଛୁ । କାରଣ ବ୍ୟକ୍ତିର ରୂପ ଲାବଣ୍ୟ ଯେତିକ ଅର୍ଥକୈନ୍ଦ୍ରୀକ ତତୋଧିକ ଅନ୍ୟ କାରଣ ନିର୍ଭର— ହୁଏତ ଦୈବୀ ହୋଇପାରେ । ମୋଟ ଉପରେ କୃଷ୍ଣପ୍ରସାଦଙ୍କର ମାନସ-ସାଗର ସମ୍ଭୂତ, ଆନ୍ଦୋଳିତ ଚିନ୍ତା ପ୍ରସୂତ, ବୌଦ୍ଧିକ ଆବେଗରେ ରୂପାନ୍ତରିତ ଆଲୋଚ୍ୟ ଚରିତ୍ରଟି ଚଳନ୍ତି ସମାଜରେ ତଟସ୍ଥ, ବିମୂଢ଼, ବିଭ୍ରାନ୍ତ ଏବଂ ସମାଜବାଦୀ ସମାଜ ଓ ଶୋଷଣ ତଥା ବୈଷମ୍ୟ ରହିତ ସମାଜ ଗଠନ ନିମନ୍ତେ, ଅକ୍ଷମ, ନିଷ୍କ୍ରିୟ, ଅସମର୍ଥ ଚରିତ୍ର — ଏକ ସୁଅ ମୁହଁର ପତର ପରି ।

ଆଲୋଚ୍ୟ ସଙ୍କଳନର ପରବର୍ତ୍ତୀ ଦୁଇଟି ଗଳ୍ପ ଯଥା "ଅରସିକେଷୁ" ଓ "ଅଭିଶପ୍ତା" ସହରୀ ବିତ୍ତ ଓ କ୍ଷମତାଶାଳୀ ଦୁଇଟି ଚରିତ୍ରର ଦୁଇ ଭିନ୍ନ ଦିଗ ସମ୍ପର୍କରେ ଲିଖିତ ହେତୁ ସାମଗ୍ରିକ ଭାବରେ ମୋ ଆଲୋଚନାର ପରିସରରୁ ବହିର୍ଭୂତ । ସଙ୍କଳନର ଚତୁର୍ଥ ଗଳ୍ପ 'କ୍ରୀତଦାସୀ'ର କାବ୍ୟ'ର ବୁଦ୍ଧିଜୀବୀ ଚରିତ୍ର ସୁବ୍ରତ "ବାହାରକୁ ସେହିପରି ଦିଶେ; କିନ୍ତୁ ଅଗାଧ ତାର ବୁଦ୍ଧି ପାଣ୍ଡିତ୍ୟ। × × × । ହଁ, ପାରମ୍ପରିକ ଭାବରେ ପଣ୍ଡିତର ଯେଉଁ ସବୁ ଗୁଣ ନିଆ ଯାଇଛି ସେଥିରୁ ସେ ବ୍ୟତିକ୍ରମ । ପଣ୍ଡିତ ହେବାକୁ ହେଲେ ମାଛ ମାଂସ ଖାଇବ ନାହିଁ, ଖଦଡ଼ କି ସେହି ଜାତୀୟ ସାଧାରଣ ଲୁଗାପଟା ପିନ୍ଧିବ, ମୁହଁକୁ ଶୁଖିଲା ଓ ଗମ୍ଭୀର କରି ରଖିବ, ସ୍ତ୍ରୀମାନଙ୍କୁ ଜନମି ଜ୍ଞାନରେ ଦୂରଛଡ଼ା ଦେଇ ରଖିବ, କ୍ଲବକୁ ଯିବ ନାହିଁ - ଆଦି ପଣ୍ଡିତ ଗୁଣଗୁଡ଼ିକ ତାଠାରେ ନାହିଁ ।" ଆଲୋଚ୍ୟ ଗଳ୍ପର ସୁବ୍ରତ ବା ଚନ୍ଦ୍ରଶେଖର ପରି ଚରିତ୍ର "ଶାମୁକା" ଗଳ୍ପରେ ମିଃ ଦେଶାଇ ଶାମୁକା ଓ ଗେଣ୍ଡା ଗୋଟାଇ ଗୋଟାଇ 'କଛି ରେପ୍ଟାଇର ସ୍ପେଶିମାନ' ପାଇ ପ୍ଲାଷ୍ଟିକ ବ୍ୟାଗରେ ସେଗୁଡ଼ିକୁ ସାଇତି ରଖିବା ସଙ୍ଗେ ତୁଳନୀୟ ।

ସାମାଜିକ ସମସ୍ୟା ସମ୍ବଳିତ, ସଙ୍କଳନର ଅନ୍ୟ ଏକ ଗଳ୍ପ ହେଉଛି 'ରାହୁ ଓ ଚନ୍ଦ୍ର' । ଏହି ଗଳ୍ପରେ ଗରୀବ ଚରିତ୍ରଟିର ମନୋବୃତ୍ତି ପୁଞ୍ଜିବାଦୀ । କଥାଟି ବୁଝାଇବା ଦରକାର ।

(୧) ପୁରୀ ଜିଲ୍ଲା ସୁନାଖଳାର ଚଷାପୁଅ ଗରୀବ 'ଏକା ଦିନରେ ଧନୀ' ହେବାର ଦୁର୍ବାର କାମନା ନେଇ 'ଟଙ୍କାର ସୁଅ ଛୁଟିଥିବା' ବର୍ମାକୁ ଯାଇ ଧୋବାର

କାମ କରିଛି । ବହୁତ ଟଙ୍କା ଅର୍ଜନ କରିଛି । ମାତ୍ର ଜାପାନ ଆକ୍ରମଣ ପୂର୍ବରୁ ବର୍ମା ନ ଛାଡ଼ି ପାରି ଓଡ଼ିଶାକୁ ଫେରି ଆସିଛି ନିଃସ୍ୱ ହୋଇ । କଲେଜ ପାଖରେ ଲଣ୍ଡ୍ରି କରିଛି । ସାଙ୍ଗରେ ତାର ରକ୍ଷିତା ସ୍ତ୍ରୀ ଚମ୍ପା ।

(୨) ଶେଷ ପର୍ଯ୍ୟନ୍ତ ଅତୀତର ଗୌରବମୟ ବିଗତ ଆଭିଜାତ୍ୟ ପ୍ରତି ମମତ୍ୱବୋଧ ତାର ଅକ୍ଷୁଣ୍ଣ ରହିଛି । ( ବର୍ମାରେ ଧୋବା କାମ କରୁଥିବା ଲୋକ କଷ୍ଟକରେ ମଧ୍ୟ ଧନୀ ହେବାକୁ ଧୋବା କାମ କରୁଥିବାରୁ ଦୁଃଖିତ ହୋଇଛି । ) ଶ୍ରମର ପ୍ରକୃତ ମୂଲ୍ୟ ନଜାଣି, ଶ୍ରମର ଗୌରବ ଗାନ ନ କରି ବୃତ୍ତିଗତ ସାମନ୍ତ-ବାଦ ଉଚ୍ଚ ନୀଚ ଭାବ ତା'ର ହୃଦୟକୁ ଘେରି ରହିଛି ।

(୩) 'ଆମେ ସବୁଦିନ ପାଇଁ ଏ ପେଷାକୁ ଆଦରିବାକୁ ପ୍ରସ୍ତୁତ ନୁହଁ । ଯେତେ ଜଲଦି ଏଥିରୁ ମୁକୁଳିବା ସେତେ ଭଲ; କିନ୍ତୁ ତା' ପୂର୍ବରୁ ଆମର ଜମି ପାଇବାକୁ ହେବ, ଧନୀ ହେବାକୁ ହେବ । ଦାରିଦ୍ର୍ୟର ଅଭିଶାପରୁ ମୁକୁଳିବା ପାଇଁ ମଣିଷ ସବୁ କରିପାରେ'' ( ପୃ. ୮୯) କହି ରାଜୀବ ପରି 'ହୃଷ୍ଟପୁଷ୍ଟ ଯୁବକ; କିନ୍ତୁ ତା'ର ଉପସ୍ଥିତିରେଇତ ଚମ୍ପା ହସି ହସି ଅନ୍ୟମାନଙ୍କୁ ଚାହେଁ । × × × ନିଜର ସ୍ତ୍ରୀ ଅନ୍ୟମାନଙ୍କୁ ଚାହିଁ ହସୁଥିବା ବେଳେ ସେ ଧୋବାସ୍ୱାମୀ ହୋଇ ମଧ୍ୟ କାହିଁକି କେବେ ହେଲେ ପ୍ରତିବାଦ କରେ ନାହିଁ ।'' (ପୃ· ୮୩) ।

(୪) ରାଜୀବ ନିଜ ସ୍ତ୍ରୀକୁ ଦେହ ବିକି ଧନ ଅର୍ଜନ କରିବାକୁ ଚେଷ୍ଟା କଲାବେଳେ କୌଣସି ଏକ ଝିଅ ପ୍ରତି ଅତ୍ୟାଚାର କରୁଥିବା ଗୁଣ୍ଡାମାନଙ୍କୁ ପ୍ରତିରୋଧ କରି ମୃତ୍ୟୁ ବରଣ କରି ଏକ ବରଣୀୟ ଚରିତ୍ରରେ ରୂପାନ୍ତରିତ ହୋଇଛି ।

ପରସ୍ପର ବିରୋଧୀ ସ୍ଥିତି ଏଠାରେ ମଧ୍ୟ ଲେଖକ ସୃଷ୍ଟି କରି ଅଛନ୍ତି । ମାତ୍ର ରାଜୀବ ଚରିତ୍ରଟିର ସମାଜ ପ୍ରତି କି ସନ୍ଦେଶ, କି ବାର୍ତ୍ତା ? ରାଜୀବ ଧନୀ ହେବାକୁ ଚାହେଁ, ଭଲ କଥା । ସମାଜରେ ମଣିଷ ପରି ବଞ୍ଚିବାକୁ ଚାହେଁ; କିନ୍ତୁ ଦେହରେ ବଳ ଥିବା ତାକତ ଥିବା ରାଜୀବ କଠୋର ପରିଶ୍ରମ କରି, ସଂଗ୍ରାମଶୀଳ କର୍ମନିଷ୍ଠ ଜୀବନ ବିତାଇବାର ଗୌରବ ବିମଣ୍ଡିତ ହୋଇ ବରେଣ୍ୟ ହୋଇ ପାରିଲା ନାହିଁ । କାରଣ ରାଜୀବର ସୃଷ୍ଟି କର୍ତ୍ତା କୃଷ୍ଣପ୍ରସାଦ ତାହା କଳ୍ପନା କରି ପାରିଲେ ନାହିଁ । ବରଂ ଚରିତ୍ରଟିର ସମ୍ପୂର୍ଣ୍ଣ ବିକାଶ ସମ୍ଭବ ହେବା ପୂର୍ବରୁ ଏକ ଆକସ୍ମିକ ଘଟଣା ପ୍ରବାହରେ ମଧ୍ୟଯୁଗୀୟ ଦୁଃସାହସୀ ବୀର ଭାବରେ ମୃତ୍ୟୁ ବରଣ

କରିଛି । ରାଜୀବର ଶ୍ରମର ମୂଲ୍ୟ ପ୍ରତି ନିରାସକ୍ତ ହୋଇ ନିଜ ସ୍ତ୍ରୀର ଦେହ ବିକି ଧନୀ ହେବାର ପ୍ରଚେଷ୍ଟା ରାଜୀବର ସଂଗ୍ରାମହୀନ ମନୋବୃତ୍ତିର ପ୍ରଶ୍ନାତ୍ମକ ପ୍ରକାଶ । ଶ୍ରୀମନ୍ତ ଏ ଗଳ୍ପର ଅନ୍ୟ ଏକ ଚରିତ୍ର । ସେ ପାଠ ପଢ଼ା ଗୁଣ୍ଡି ଚମ୍ପାର ଦେହ ପ୍ରତି ଆସକ୍ତ । ପୁଲିସ ଶାନ୍ତି ଶୃଙ୍ଖଳା ରକ୍ଷା ବିଗରେ ଅସମର୍ଥ ।

ଏହିଭଳି ଭାବରେ ଉପରେ ବର୍ଣ୍ଣିତ ଗଳ୍ପ ଗୁଡ଼ିକର ସାମାଜିକ ପ୍ରଭାବ କେଉଁ ଧରଣର ଓ କେତେ ଗଭୀର, ତାହା ସହଜେ ଅନୁମେୟ ।

ଏ ଯାବତ୍ ସାହିତ୍ୟର ସାମାଜିକ ପ୍ରଭାବ ସମ୍ପର୍କରେ କହିଲି ମଧ୍ୟରେ ଏତିକି କଥା ମୁଁ କହି ଆସିଛି ଯେ (୧) ଭାରତୀୟ ସାହିତ୍ୟର ବିଶେଷ କରି ଓଡ଼ିଆ ସାହିତ୍ୟର ସାମାଜିକ ପ୍ରଭାବ, ଆମର ରାଜନୈତିକ ଓ ଅର୍ଥନୈତିକ ଆଦର୍ଶ ସହିତ ବିରୋଧ ନ କରିବା ଉଚିତ । ଏକ ବିକାଶଶୀଳ ରାଷ୍ଟ୍ରରେ କଥା ସାହିତ୍ୟର ଚରିତ୍ର ସକଳ ନିଷ୍କ୍ରିୟ ନ ହେବା ଉଚିତ, ପୁଞ୍ଜିବାଦୀ ଓ ଅବକ୍ଷୟୀ ସମାଜର ଚିନ୍ତା ବହନ ନ କରିବା ଉଚିତ ।

ସମ୍ପ୍ରତି ଦେଶରେ ଫାସିବାଦ ବିରୁଦ୍ଧରେ ସରକାରୀ ପ୍ରୋତ୍ସାହନରେ ଲେଖକ, ଶ୍ରମିକ ଓ ବୁଦ୍ଧିଜୀବୀ ପ୍ରମୁଖଙ୍କର ସମ୍ମିଳନର ଆୟୋଜନ କରା ଯାଉଛି । ସରକାରଙ୍କ ଉପରେ ଲୋକଙ୍କର ଆସ୍ଥା ଥିବା ହେତୁ ଏବଂ ବିଧ ରାଜ-ନୈତିକ ଫାସିବାଦ ବିରୋଧୀ ଆଦର୍ଶ ଉପରେ ମଧ୍ୟ ଆସ୍ଥା ରହିଛି । ଯଦି ଏହା ହିଁ ସତ୍ୟ ତେବେ ଆଲୋଚ୍ୟ ଆଦର୍ଶ ଦେଶର ଓ ଦଶର ଉନ୍ନତି ସାଧନ କରିବ ବୋଲି ଗ୍ରହଣ କରି ଏହି ଆଦର୍ଶକୁ ପରିପୁଷ୍ଟ କରୁଥିବା ସାହିତ୍ୟ ସୃଷ୍ଟି ହେବା ବିଧେୟ । ଜନଗଣର ମଙ୍ଗଳ ପାଇଁ ଲେଖକମାନଙ୍କର ଏହି ଶ୍ରେଣୀର ଦାୟିତ୍ୱବୋଧ ସେମାନ-ଙ୍କର ବ୍ୟକ୍ତିଗତ ସ୍ୱାଧୀନତାର ପରିପନ୍ଥୀ ହେବ ନାହିଁ । କାରଣ ଗଣର ମଙ୍ଗଳ ପାଇଁ ଜଣର ସ୍ୱାଧୀନତା ତ୍ୟାଗ ଅବାଞ୍ଛିତ ନୁହେଁ ବରଂ ଆମ ଦେଶକୁ ଆକ୍ରମଣ କରିଥିବା ଦେଶର ବେତାର କାର୍ଯ୍ୟକ୍ରମକୁ ନ ଶୁଣିବା ପାଇଁ ସରକାର ନିର୍ଦ୍ଦେଶନାମା ଜାରି କଲେ ତାହାକୁ ବ୍ୟକ୍ତିଗତ ସ୍ୱାଧୀନତା ଲୋପ ବୋଲି ନ ବିଚାରି ଯେପରି ଆମେ ସ୍ୱାଗତ କରୁ ସେହିପରି ଲୋକପ୍ରିୟ ଓ ଆସ୍ଥା ରକ୍ଷା କରିଥିବା ସରକାରଙ୍କ ରାଜନୈତିକ ଆଦର୍ଶକୁ ସାହିତ୍ୟରେ ପ୍ରତିଫଳିତ କରିପିବା ଉଚିତ ।

ସାହିତ୍ୟିକ ଆଜିର ରାଜନୀତି-କୈନ୍ଦ୍ରିକ ଜୀବନ ପ୍ରବାହରୁ ନିଜକୁ ଦୂରେଇ ନପାରେ । ଗଲା କେତେଦିନ ତଳେ ବଙ୍ଗଳା ଦେଶରେ ଜେଲ୍ ମଧ୍ୟରେ ୪ ଜଣ

ବିଶିଷ୍ଟ ନେତାଙ୍କୁ ହତ୍ୟା କରାଗଲା ବେଳେ ପଶ୍ଚିମ ବଙ୍ଗର ପ୍ରେମେନ୍ଦ୍ର ମିତ୍ର ପ୍ରମୁଖ ସାହିତ୍ୟିକ ପ୍ରତିବାଦର ସ୍ୱର ଉତ୍ତୋଳନ କଲେ, ନିଜ ସାହିତ୍ୟରେ ମଧ୍ୟ ନିଜର ଚିନ୍ତା ପ୍ରକାଶ କରିଥିବେ । ସାହିତ୍ୟିକର ଏହି ଚିର ଜାଗ୍ରତ (eternal vigilance) ସ୍ୱାଗତଯୋଗ୍ୟ । ସରକାରୀ ରାଜନୈତିକ ଆଦର୍ଶ ସମ୍ପର୍କରେ ଲେଖକ ଯେପରି ସଚେତନ ରହି ତଦ୍‌ଯୋଗ୍ୟ ସାହିତ୍ୟ ସୃଷ୍ଟି କରିବେ ସେହିପରି ଲୋକପ୍ରିୟ ସରକାର ତାଙ୍କ କାର୍ଯ୍ୟର ସରକାରୀ ମହଲର ଆଲୋଚନା ଓ ସମାଲୋଚନାକୁ ନିମନ୍ତ୍ରଣ କରୁଥିଲେ ସାହିତ୍ୟିକର ଭିନ୍ନ ମତ ପ୍ରକାଶ କରିବାରେ ଅସୁବିଧା ନାହିଁ । ମୋଟକଥା ରାଜନୈତିକ କ୍ଷେତ୍ରରେ ସାହିତ୍ୟିକର ଯଥେଷ୍ଟ କର୍ତ୍ତବ୍ୟବୋଧ ରହିଛି ।

## ଅର୍ଥନୈତିକ ପ୍ରଗତି ଓ ସାହିତ୍ୟ

ଆଜି ଯେତେବେଳେ ଆମ ଦେଶରେ ଅର୍ଥନୈତିକ ପ୍ରଗତି ନିମିତ୍ତ ସଂଘବଦ୍ଧ ଉଦ୍ୟମ କରାଯାଉଛି, ଅନ୍ୟାନ୍ୟ ଦେଶସହ ସମକକ୍ଷ କରିବା ପାଇଁ ଆମର ସଂଘବଦ୍ଧ ଉଦ୍ୟମ ଚାଲିଅଛି । ସେତେବେଳେ ଏ ଦିଗରେ ସାହିତ୍ୟ ମଧ୍ୟ କାର୍ଯ୍ୟ କରିବା ଉଚିତ । ସାହିତ୍ୟ ବ୍ୟକ୍ତିର ବୁଦ୍ଧି, ଚିନ୍ତା ଓ ଚେତନାକୁ ଉଦ୍ଦୀପିତ କରେ । ସୁନିୟନ୍ତ୍ରିତ ବୈଜ୍ଞାନିକ ଚେତନା ଅର୍ଥନୈତିକ ପ୍ରଗତିରେ ସହାୟକ ହୁଏ । କୌଣସି ଦେଶର ଉତ୍ପାଦନ ଶକ୍ତି କେବଳ ଯନ୍ତ୍ରପାତି (Physical Capital) ଉପରେ ନିର୍ଭର କଲେ ଚାଲେ ନାହିଁ, କାରଣ ଏହା ତୁଳନାରେ ସୁଶିକ୍ଷିତ, ଉନ୍ନତ କାରିଗରୀ ଜ୍ଞାନ ହାସଲ କରିଥିବା ଜନଶକ୍ତି (Human skill) ମଧ୍ୟ ଆବଶ୍ୟକ । ଆଡ଼ାମ ସ୍ମିଥ (Adam Smith), ଥିନେନ୍ (Theenen), ଫିସର (Fisher), ଗାଲବ୍ରେଥ ପ୍ରମୁଖ ଅର୍ଥନୀତି ବିଶାରଦଗଣ ପୁଞ୍ଜିର ଅର୍ଥ ବ୍ୟାପକ କରି ମାନବିକ ଶକ୍ତିକୁ ପୁଞ୍ଜିରୂପେ ଗ୍ରହଣକରି ମାନବିକ ପୁଞ୍ଜି (Human Capital)ର ଗୁରୁତ୍ୱ ପ୍ରତିପାଦନ କରିଛନ୍ତି । ଶ୍ରମିକର ଶିକ୍ଷା, ମନୋଭାବ, ଶକ୍ତି, କର୍ମତତ୍ପରତା, ନିଷ୍ଠା, ଶ୍ରଦ୍ଧା ଓ ଆନ୍ତରିକତା ଆଦି ସଦ୍‌ଗୁଣାବଳୀ ମାନବିକ ପୁଞ୍ଜିର ଅନ୍ତର୍ଭୁକ୍ତ । ଯେଉଁ ଦେଶର ମାନବିକ ପୁଞ୍ଜି ଯେତେ ଉନ୍ନତ, ସେ ଦେଶର ଅର୍ଥନୀତି ଓ ଜାତୀୟ ଉତ୍ପାଦନ ସେତିକି ସଫଳ ।

ସାହିତ୍ୟ ମାନବର ଗୁଣାତ୍ମକ ବିକାଶରେ ସ୍ୱ ପ୍ରଭାବ ପକାଇବା ଆବଶ୍ୟକ । ସାହିତ୍ୟ ବ୍ୟକ୍ତିକୁ ସହଯୋଗୀ, ସହିଷ୍ଣୁ, କର୍ମତତ୍ପର, ନିୟମାନୁବର୍ତ୍ତୀ

କରି ଗତି ଖୋଲିବା ଦରକାର । ମିତବ୍ୟୟୀ, କର୍ମତତ୍ପର, ସଦ୍‌ଗୁଣ ସମ୍ପନ୍ନ ମାନବିକ ପୁଞ୍ଜି ଦେଶର ଅର୍ଥନୈତିକ ପ୍ରଗତି ନିମିତ୍ତ ଆବଶ୍ୟକ ।

ସାହିତ୍ୟ ଏହି ଲକ୍ଷ୍ୟ ନେଇ ବ୍ୟକ୍ତିଙ୍କୁ କର୍ମ କରିବାର ସନ୍ଦିଗ୍ଧ ହେବାର ପ୍ରେରଣା ଦେବା ଦରକାର । ସାହିତ୍ୟ ଜାତୀୟ ଚରିତ୍ର ଗଠନ କରିବାରେ ତତ୍ପର ଓ ପ୍ରଭାବଶାଳୀ ହେବା ବାଞ୍ଛନୀୟ । ସମ୍ପ୍ରତି ଆମର ଜାତୀୟ ଚରିତ୍ର ସୁସଙ୍ଗଠିତ ନୁହେଁ । ବ୍ୟକ୍ତି ଚରିତ୍ର ଦୁର୍ନୀତି ଦରିଦ୍ରଣ । ଅଳ୍ପ କାମ କରି ବେଶୀ ମଜୁରି ନେବା, ମୋଟେ କାମ ନକରି ପଇସା ନେବାର ଚିତ୍ତବୃତ୍ତି ଅଧିକାଂଶ ଲୋକଙ୍କର । ଏପରିକି ଛାତ୍ର ମଧ୍ୟ ମୋଟେ ପାଠ ନ ପଢ଼ି ପରୀକ୍ଷାରେ ବେଶୀ ନମ୍ବର ରଖିବାକୁ ଚାହୁଁଅଛି । ସରକାରୀ ଅର୍ଥକୁ କଳେ ବଳେ କୌଶଳେ ନିଜର କରିବା, ସରକାରୀ ଅର୍ଥ ବରବାଦ କରିବାକୁ ବ୍ୟକ୍ତି ପ୍ରସ୍ତୁତ । ଜାତୀୟତାବୋଧ ଆମର ନାହିଁ । କେବଳ ଯୁଦ୍ଧ ଲାଗିଲେ ଦେଶପ୍ରେମର ସ୍ରୋତ ଉଚ୍ଛୁଳି ଉଠେ ମାତ୍ର । ପାଠୁଆ ଲୋକେ ଜାତୀୟ ଅର୍ଥନୀତିକୁ ବିପର୍ଯ୍ୟସ୍ତ କରୁଥିବା କଳାବଜାରକୁ ପୃଷ୍ଠପୋଷକତା କରୁଛନ୍ତି । ଦେଶର ପୁରାତନ ଦେବମୂର୍ତ୍ତି ବିଦେଶରେ ବିକ୍ରୀ କରୁଅଛନ୍ତି । ବୈଜ୍ଞାନିକ ସମାଜର ବାସିନ୍ଦା ବୋଲାଇ ସକଳ ବୈଜ୍ଞାନିକ - ସମାଜ ବିରୋଧୀ କାର୍ଯ୍ୟ କରୁଛନ୍ତି ଯଥା ଶକ୍ତିର ଦୁରୁପଯୋଗ / ବିଦ୍ୟୁତ୍ ଶକ୍ତିର ଦୁରୁପଯୋଗ । ବିଦ୍ୟୁତ୍ ଶକ୍ତିର ସଙ୍କଟ, ଜାତୀୟ ଉତ୍ପାଦନରେ ବିଦ୍ୟୁତ୍ ଶକ୍ତିର ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପର୍କରେ ଅବଗତ ଥିବା ଲୋକେ ଅଣ-ଉତ୍ପାଦକ ( unproductive ) ବାହାଘର ଆଲୋକ ସଜ୍ଜାରେ ଗୁରୁତ୍ୱ ପ୍ରଦାନ କରୁଛନ୍ତି ।

ଏଣୁ ସାହିତ୍ୟ ସମାଜର ବ୍ୟକ୍ତିଗଣଙ୍କର ଚରିତ୍ର ଗଠନ, ମାନବିକ ପୁଞ୍ଜିର ଉନ୍ନୟନରେ କାର୍ଯ୍ୟ କରିବା ଆବଶ୍ୟକ । ମାନବିକ ସମ୍ପର୍କ, ସହନଶୀଳ ମନୋଭାବ ଓ ସହଯୋଗିତା ଆଦି ଅର୍ଥନୈତିକ ପ୍ରଗତି ନିମିତ୍ତ ଅପରିହାର୍ଯ୍ୟ ମାନବିକ ଗୁଣରେ ବ୍ୟକ୍ତି ଚରିତ୍ରକୁ ନିୟନ୍ତ୍ରିତ କରିବା ଦିଗରେ ସାହିତ୍ୟ କାର୍ଯ୍ୟ କରିବା ଉଚିତ ।

ମାନବିକ ଶକ୍ତି ହିଁ ଜାତୀୟ ଶକ୍ତି । ଅର୍ଥନୈତିକ ବିକାଶର ଆଧାର ସ୍ତମ୍ଭ ହେଉଛନ୍ତି ନାଗରିକଗଣ । ଏଣୁ ବ୍ୟକ୍ତିର ମାନସିକ ଓ ଆବେଗିକ ଉନ୍ନତି ବ୍ୟତିରେକ ଦେଶର ପ୍ରଗତି ଆଶା କରିବା ବିଡ଼ମ୍ବନା ମାତ୍ର । ଆମର ସମସ୍ୟା ଯେ

ଲୋକମାନେ ଶରୀର ନିମିତ୍ତ ଖାଦ୍ୟ ସନ୍ଧାନରେ ବ୍ୟସ୍ତ ରହି ମାନସିକ ଖାଦ୍ୟ ଆହରଣର ଗୁରୁତ୍ୱ ଉପଲବ୍ଧି କରୁନାହାଁନ୍ତି । "ସାହିତ୍ୟ ସଙ୍ଗୀତ ରସାନଭିଜ୍ଞଃ, ସାକ୍ଷାତ୍ ପଶୁ ପୁଚ୍ଛ ବିଷାଣ ହୀନଃ" କଥାଟିର ବ୍ୟାବହାରିକ ଦିଗ ସଂପର୍କରେ ବହୁ ବ୍ୟକ୍ତି ଅନବହିତ । ସାହିତ୍ୟ କେବଳ ବ୍ୟକ୍ତିବିଶେଷଙ୍କର ମାନସ ବିଳାସ ନ ହୋଇ ଗଣର ପ୍ରାଣ ପ୍ରବାହ ସହ ଏକାକାର ହେବା ଆବଶ୍ୟକ ।

## ସାଂସ୍କୃତିକ ପ୍ରଗତି :

କେବଳ ଲୁଣର କଙ୍କାଳ ଭିତରେ ବ୍ୟସ୍ତ ରହିବା ଯାନ୍ତ୍ରିକ ଜୀବନର ଲାଳିତ୍ୟ ପ୍ରତି ଆଖିବୁଜି ଦେବା ଅନୁଚିତ । ସାହିତ୍ୟ ବ୍ୟକ୍ତିର ଲାଳିତ୍ୟ-ବିକାଶ ନିମିତ୍ତ କାର୍ଯ୍ୟ କରିଲେ ହିଁ ବ୍ୟକ୍ତିର ରୁଚିବନ୍ତ ମାର୍ଜିତ ଓ ସଂସ୍କୃତ ଚରିତ୍ର ସଙ୍ଗଠିତ ହେବ । ସାହିତ୍ୟର ଛନ୍ଦ ଜୀବନରେ ମଧୁଗୁଞ୍ଜନ ସୃଷ୍ଟି କରିବା ବିଧେୟ । ସାଂପ୍ରତିକ ସାହିତ୍ୟ ଓଡ଼ିଆ ଜନଜୀବନକୁ ପ୍ରତିବିମ୍ବିତ କରିବା ସଙ୍ଗେ ସଙ୍ଗେ ଜୀବନକୁ ଲଳିତ, କମନୀୟ ଓ ରମଣୀୟ କରି ତୋଳିବା ଦରକାର ।

ପରିଶେଷରେ ସାଂପ୍ରତିକ କଥା ସାହିତ୍ୟ ଜନଗଣଙ୍କୁ ସମୁଚିତ ରାଜନୈତିକ ବିକାଶ, ଅର୍ଥନୈତିକ ପ୍ରଗତି ଓ ସାଂସ୍କୃତିକ ଉନ୍ନତି ଦିଗରେ ନିଜର ଗଭୀର ପ୍ରଭାବ ପକାଇବା ଉଚିତ । ଅନ୍ୟଥା ବର୍ଷବ୍ୟାପୀ ସାହିତ୍ୟ ରଚନା ସ୍ୱରୂପ ଶ୍ରମ, ସମୟ ଓ ଶକ୍ତି ଅପଚୟ ହେବ ହିଁ ହେବ । ଆଜିର ସାହିତ୍ୟିକ ଧାରା ଭବିଷ୍ୟତର ଇତିହାସ-କାରର ଭାଷାରେ ସ୍ଥାଣୁ, ସମାଜ ନିର୍ବାସିତ ଅବକ୍ଷୟୀ ବୋଲି କଥିତ ନ ହେବା ଉଚିତ ।



'ଅଧୁନା' ୪ର୍ଥ ବର୍ଷ ୧ମ ସଂଖ୍ୟା
ଜୁନ୍/ଜୁଲାଇ, ୧୯୭୫
୪ର୍ଥ ବର୍ଷ ୩ୟ ସଂଖ୍ୟା
ସେପ୍ଟେମ୍ବର/ଅକ୍ଟୋବର, ୧୯୭୫
୪ର୍ଥ ବର୍ଷ, ୪ର୍ଥ ସଂଖ୍ୟା
ନଭେମ୍ବର/ଡିସେମ୍ବର, ୧୯୭୫

# ସାହିତ୍ୟ ସମସ୍ୟା (୨)

ଖାଦ୍ୟ ସମସ୍ୟା, ବସ୍ତ୍ର ସମସ୍ୟା ଗୃହ ବିକ୍ଷୋଭ ଜନିତ ସମସ୍ୟା, ଜନସଂଖ୍ୟା ବୃଦ୍ଧି ଆଦି ଗୋଟିଏ ଗୋଟିଏ ସମସ୍ୟା ଦ୍ୱାରା ଆଜ ଆମର ସ୍ଥିତି ଯେପରି ବିପନ୍ନ ଠିକ୍ ସେହିପରି ସାହିତ୍ୟ-ସମସ୍ୟା ଦ୍ୱାରା ମଧ୍ୟ ।

ସାହିତ୍ୟ ସମସ୍ୟା କହିଲେ ହଠାତ୍ ଆମର ସାଧାରଣ ମନ ବିସ୍ମିତ ହୋଇ ଉଠେ । କାରଣ ସାଧାରଣ ଜୀବନରେ ସାହିତ୍ୟର ଉପକାର ନ ଥିବା ହେତୁ ବ୍ୟକ୍ତି ସାହିତ୍ୟର ଅନୁପସ୍ଥିତିକୁ ହିଁ ଉପଲବ୍ଧି କରେ ଓ ସେତେବେଳେ ଆମର ବଞ୍ଚିବା-ପାଇଁ ଯେ ସାହିତ୍ୟ ସମସ୍ୟା ସୃଷ୍ଟି କରୁଛି ତାହା ଦୃଷ୍ଟିର ଅନ୍ତରାଳକୁ ଚାଲିଯାଏ ।

ପ୍ରକୃତରେ ଆମର ବଞ୍ଚିବା ପାଇଁ ଆଜ ସାହିତ୍ୟର ଏବଂବିଧ ନିଷ୍କ୍ରିୟତା ତଥା ସାହିତ୍ୟ ସମସ୍ୟା ପ୍ରତି ଜନଗଣର ଅନାକୃଷ୍ଟ ଦୃଷ୍ଟି ହିଁ ସମସ୍ୟା ସୃଷ୍ଟି କରୁଛି ।

ଆଜ ସାହିତ୍ୟ ଜନଗଣର ବିରୋଧାଚରଣ କରୁଛି, ବାଧା ସୃଷ୍ଟି କରୁଛି । ପ୍ରଥମ କଥା ପ୍ରଶାସନିକ ବା ସାଧାରଣ କ୍ଷେତ୍ରରେ ସ୍ୱାଧୀନତା ଉଚ୍ଛୃଙ୍ଖଳତାରେ ପରିଣତ ହେଲାପରି ସାହିତ୍ୟ କ୍ଷେତ୍ରରେ ମଧ୍ୟ ଏକ ଅଭୁତପୂର୍ବ, ଅପ୍ରତ୍ୟାଶିତ, ଅହେତୁକ ବିଶୃଙ୍ଖଳା ଦେଖା ଦେଇଛି । ୧୯୪୭ ମସିହା ପୂର୍ବ ଭାରତୀୟ ସାହିତ୍ୟରେ

ଇଂରେଜମାନଙ୍କ ସ୍ତବ ବା ଖୋସାମଦ ଓ ସମର୍ଥନ କରି ଲେଖା ଲେଖିଲେ ଯେପରି ସମସ୍ୟା ସୃଷ୍ଟି ହେଉଥିଲା ସଂଗ୍ରାମୀମାନଙ୍କ ପାଇଁ ଏବେ ଠିକ୍ ସେହି ଧରଣର ସମସ୍ୟା ଦେଖା ଦେଇଛି ଓ ତାହା ଅତି ଜଟିଳ ରୂପ ଧାରଣ କରିଛି । ଗୋଟିଏ କଥାରେ କହିଲେ ଆଜିର ସାହିତ୍ୟ ଜନଗଣର ସ୍ୱାର୍ଥ ବିରୋଧୀ ହୋଇ ପଡ଼ୁଛି ଏବଂ ତାହାହିଁ ସମସ୍ୟା ।

ଆଜି ରାଜନୈତିକ ସ୍ତରରେ ଆମେ ସମାଜବାଦ ଗ୍ରହଣ କରି ସମାଜବାଦୀ ସମାଜ ଗଠନ ନିମିତ୍ତ ବଦ୍ଧପରିକର ହୋଇଛୁ । ଅବଶ୍ୟ ଆମେ ଅର୍ଥନୈତିକ କ୍ଷେତ୍ରରେ ପ୍ରକୃତ ସମାଜବାଦୀ କାର୍ଯ୍ୟକ୍ରମ ଗ୍ରହଣ କରିଛୁ କି ନା, ବା ସମାଜବାଦର ପ୍ରକୃତ ଅର୍ଥ ବୁଝିଛୁ କି ନା, ତା ଭିନ୍ନ ପରିସରରେ ଆଲୋଚ୍ୟ । କିନ୍ତୁ ଆମର ସାହିତ୍ୟ ସମାଜବାଦୀ ସମାଜ ଗଠନରେ କେତେଦୂର ସାହାଯ୍ୟ କରୁଛି ତାହାହିଁ ଆମର ଆଲୋଚ୍ୟ ।

ଦୁଃଖର କଥା ଆମ ସାହିତ୍ୟ କିନ୍ତୁ ସମାଜବାଦ ବିରୋଧୀ ହୋଇ ପଡ଼ୁଛି । ଏହା ସମାଜର ପ୍ରକୃତ ସତ୍ୟକୁ ଉଦ୍‌ଘାଟିତ କରିବାରେ ଅସମର୍ଥ ହୋଇପଡ଼ୁଛି । ନାଲି ଚଷମା ପିନ୍ଧିଲା ଲୋକ ବସ୍ତୁ ଜଗତରେ ପ୍ରକୃତ ରଙ୍ଗ ନ ଜାଣି ପାରିଲାପରି ଅବସ୍ଥା ହୋଇଛି । ଏ ସମ୍ପର୍କରେ ଅନ୍ୟ ଏକ ସମସ୍ୟା ହେଉଛି ଯେ, ଲେଖକ ନିଜର ସାମାଜିକ ଦାୟିତ୍ୱବୋଧ ସମ୍ପର୍କରେ ସଚେତନ ହୋଇ ପାରୁନାହିଁ ।

ଏକ ସମାଜବାଦୀ ସମାଜ ଗଠନ କରିବା ନିମିତ୍ତ ଲେଖକର କିଛି ନା କିଛି ଦାୟିତ୍ୱ ନିଶ୍ଚିତ ଭାବରେ ଅଛି । ନିଜର ସମସ୍ତ ଅଧିକାର, ସ୍ୱାତନ୍ତ୍ର୍ୟ ବଦଳରେ ସେ ନିଜ ସୁରକ୍ଷା ଆଦି ସ୍ୱାର୍ଥ ହାସଲ କରିବାକୁ ଯେତେବେଳେ ସମାଜ ଭିତରେ ବାସ କରୁଛି, ସେତେବେଳେ ତା ପକ୍ଷରେ ସମାଜର ସ୍ୱାର୍ଥ ପ୍ରତି ଦୃଷ୍ଟି ପ୍ରଥମ ଏବଂ ପରମ କର୍ତ୍ତବ୍ୟ ।

ସମାଜ ବିଭିନ୍ନ ଲୋକଙ୍କୁ ସମାଜର ମଙ୍ଗଳ ପାଇଁ ଭିନ୍ନ ଭିନ୍ନ କାର୍ଯ୍ୟ କରିବାକୁ ଆଦେଶ ଦେଇଛି । ଲେଖା ଲେଖି କାମ କରୁଛି ଲେଖକ ଓ ତା ସମାଜ ଦ୍ୱାରା ଆଦେଶ ପାଇ ତଥା ସମାଜ ପାଇଁ । ଏ ଦୃଷ୍ଟିରୁ ଆଜି ଆମେ ଏକ ସମାଜବାଦୀ ବିପ୍ଳବର ପଥକୁ ଗ୍ରହଣ କରିନେଇଥିଲା ବେଳେ ଲେଖକର ଦାୟିତ୍ୱ ହେଉଛି ଏ ବିପ୍ଳବକୁ ସଫଳ କଲାପରି ଲେଖା ଲେଖିବା । ସମାଜବାଦୀ ବିପ୍ଳବକୁ ସଫଳ

କରାଇବା ପାଇଁ ଲେଖକଙ୍କୁ ସମାଜବାଦୀ-ବାସ୍ତବବାଦୀ (Socialist Realist) ଲେଖା ଲେଖିବାକୁ ପଡ଼ିବ ଯେଉଁ ଲେଖା ଏକ ଅର୍ଥନୈତିକ ଶୋଷଣ ରହିତ, ବୈଷମ୍ୟମୁକ୍ତ, ଭୟହୀନ, ବୁଦ୍ଧି ଧାପ୍ତ, କ୍ଷୁଧାମୁକ୍ତ ଜୀବନଯାପନ ପାଇଁ ସମାଧାନର ଗଠନମୂଳକ ପନ୍ଥା ନିର୍ଦ୍ଦେଶ ତଥା ପ୍ରଦର୍ଶନ କରି ପାରିବ ।

ଏ ପରିପ୍ରେକ୍ଷୀରେ ଆମର ସାହିତ୍ୟ ଉନ୍ନତ କରି ପାରୁନାହିଁ । ଉନ୍ନତ ନ କରିବାର ଦୁଇଟି ମୁଖ୍ୟ କାରଣ ହେଉଛି — ନିରକ୍ଷରତା ଏବଂ ଅର୍ଥନୈତିକ ଦୁର୍ଗତି । ଅର୍ଥନୈତିକ ସ୍ଥିତି ଦୁର୍ବଳ ହେତୁ ଲୋକେ ଯେପରି ପଢ଼ାପଢ଼ି କରି ପାରୁ ନାହାନ୍ତି, ସେହିଭଳି ଟଙ୍କା ରୋଜଗାରରେ ସଦାବେଳେ ବ୍ୟସ୍ତ ରହୁଛନ୍ତି । ଖାଲି ପେଟରେ କିଏ କାହିଁକି ସାହିତ୍ୟ ପଢ଼ିବ ଯେ ? ଯେଉଁଠି ଓଳିକର ଭାତ ଯୋଗାଡ଼ କରିବାରେ ସମୟ ଯାଉଛି, ସେଠି ସାହିତ୍ୟ ବହି ବା ପତ୍ରିକା କିଏ କାହିଁକି କିଣିବ ? କାହିଁକି ବା ପଢ଼ିବ ? ସେମିତି ପାଠ ପଢ଼ିଲା ଲୋକଙ୍କ ସଂଖ୍ୟା ବି ଅଧିକ ନୁହେଁ । ଏଣୁ ସାଧାରଣ ଲୋକ ସାହିତ୍ୟ କହିଲେ କଣ ବୁଝନ୍ତି ନାହିଁ, ପଢ଼ିବା ତ ଦୂରର କଥା ।

ଅଧିକନ୍ତୁ ଦୁଃଖର ବିଷୟ ଯେ ଆମ ସାହିତ୍ୟିକମାନେ ମୋଟେ ଏ ଦିଗରେ ଚିନ୍ତା କରି ନାହାନ୍ତି । ତାଙ୍କର ସାହିତ୍ୟ ଜନସାଧାରଣଙ୍କ ନିକଟରୁ ଯାଇ ପାରୁନାହିଁ, ସୋଇଲେ ଜାଣୁ ନାହାଁନ୍ତି । ଆଜି ଆମେ ଏଭଳି ଏକ ସାହିତ୍ୟ ସୃଷ୍ଟି କରିବାରେ ଲାଗିଛୁ ଯାହାକୁ ମୋଟେ ଅଳ୍ପ କେଇଜଣ ପଢ଼ୁଛନ୍ତି ।

ଲୋକେ ପଢ଼ିଲେ କେଉଁଠି ଲାଭ, ଲାଭାଂଶ ମିଳିବ ? ମନ ପତ୍ରିକାର ମୂଲ୍ୟ କମି ଯାଆନ୍ତା । ବହି ଗୁଡ଼ାକ ବେଶ୍ ଶସ୍ତା ହୋଇ ଯାଆନ୍ତା । ମୁଦ୍ରାଣ ଶିଳ୍ପର ବିକାଶ ଘଟନ୍ତା । ଏ କ୍ଷେତ୍ରରେ ହିନ୍ଦୀ, ବଙ୍ଗଳା ଓ ଇଂରାଜୀ, ତେଲୁଗୁ, ମାଲୟାଲମ ଆଦି ଭାଷାର ସାହିତ୍ୟ ତୁଳନାରେ ଆମେ ଏତେ ପଛରେ ନ ପଡ଼ନ୍ତୁ ସତେ ?

ଏଠି ଲେଖକ ବୋଲି କେହି ପ୍ରାୟ ନାହାନ୍ତି । କାରଣ ଲେଖିକରି ପେଟ ପୂରେନା । ସରକାରୀ ଚାକିରୀ ମୁଖ୍ୟ, ଲେଖାଲେଖି ଗୌଣ — ଏ ତ ଅଧିକାଂଶ ଲେଖକଙ୍କର କଥା । କିନ୍ତୁ ଏହି ସମସ୍ୟା କଥା କିଏ ଚିନ୍ତା କରୁଛି ? ବରଂ ସମସ୍ତେ ନିଜ ନିଜ ବାଟ ଧରିଛନ୍ତି । ସାମାଜିକ ଦାୟିତ୍ୱ ଭୁଲିଲା ଲୋକ ସମାଜଠାରୁ କ'ଣ ଆଶା କରିବ ? ଫଳରେ କ୍ଷତି ହେଉଛି ଉଭୟ ଜନସାଧାରଣ ଓ ଲେଖକଙ୍କର । ଲେଖକର ପାଠକ ପ୍ରତି ଅଭିଯୋଗ; ପାଠକର ଲେଖକ ପ୍ରତି ଅଭିଯୋଗ ।

ଫୁତ୍କାର କରିବା ସବୁ ସାପଙ୍କର ଗୁଣ ହେଲେ ବି ଶିବଙ୍କ ସାପର ପ୍ରତାପ ଢେର ବେଶୀ । ସେଇମିତି ଆମ ଦେଶରେ ବୁଦ୍ଧିଜୀବୀ ବୋଲି ଯେଉଁମାନେ ମାର୍କାମରା ହୋଇ ଅଛନ୍ତି ସେମାନେ ତ ଫୁତ୍କାର କରିବା କଥା; କିନ୍ତୁ ଯେଉଁମାନେ ଉଭୟ ବୁଦ୍ଧିଜୀବୀ ଓ ସାହିତ୍ୟଜୀବୀ ସେମାନଙ୍କର ପ୍ରତାପ ଟିକିଏ ବେଶୀ ।

ଆମେ ଆଜି ଯେଉଁ ବୁଦ୍ଧିଜୀବୀମାନଙ୍କୁ ଦେଖୁଛୁ ଏମାନଙ୍କର ଆଦି ପୁରୁଷ ସେଇ ଯେ ମ୍ୟାକ୍‌ଲେଙ୍କର ଶିକ୍ଷା ବ୍ୟବସ୍ଥା ପ୍ରଚଳିତ ହେଲା ତହିଁରୁ ଜନ୍ମ ନେଇଥିଲେ । ସେଇଦିନଠାରୁ କୋଟି କୋଟି କରଦାତାଙ୍କର ଟିକସରେ ଏମାନେ ବଞ୍ଚି ରହିଛନ୍ତି ଓ ଯେଉଁ ଫୁତ୍କାର କରୁଛନ୍ତି ସେଥିରେ ବିଷ ଝରି ପଡୁଛି ଟିକସଦାତାଙ୍କ ଉପରେ ।

ସେଲୁନ୍‌ର ଖିଅର ହୋଇ ସାରିଲା ପରେ ବାରିକ ଗୋଟାଏ ବୋତଲ ଧରି ମୁହଁରେ ପାଣି ଛିଞ୍ଚିଲା ବେଳେ ଲୋକଟା ଯେପରି ହଠାତ୍ ଆକ୍ତା ମାକତା ହୋଇ ଆଖି ବୁଜି ପକାଏ ଏବେ ଠିକ୍ ତାହାହିଁ ଘଟୁଛି । ବୁଦ୍ଧିଜୀବୀ ସାହିତ୍ୟସେବୀ-ଗଣ ଏବେ ଯେଉଁ ସାହିତ୍ୟ ସୃଷ୍ଟି କରୁଛନ୍ତି ତାହା ଜନଗଣ ବୁଝିପାରୁ ନାହାନ୍ତି ।

ପ୍ରଥମ କଥା ଆଜିର କବିତା ପରି ଗଳ୍ପ ମଧ୍ୟ ଦୁର୍ବୋଧ ହେବାକୁ ଆରମ୍ଭ କରିଛି । ଏ ଦୁର୍ବୋଧତା ବେଶୀ ଭାଗ କୃତ୍ରିମ । ଦୁର୍ବୋଧ ଲେଖାକୁ ଦୁର୍ବୋଧ ବୋଲି କହିବାକୁ ପଛଉଛନ୍ତି, କାରଣ କାଳେ ଏ ଦୁର୍ବୋଧତା ହେଉଛି ବୌଦ୍ଧିକତା । ସେ ଲୋକ-କଥାଟି ମନେ ପଡୁଛି । ରଜା ଲୁଗା ପିନ୍ଧିଲେ ଯାହା ଏକ ଲୁଗା ନଥିଲା; କିନ୍ତୁ ଯାହା ଆଖିକୁ ସେ ଲୁଗା ଦେଖାଯିବ ନାହିଁ ସିଏ ବୋକା ଓ ମୂର୍ଖ ହେବ । ସେ ନ୍ୟାୟରେ ସମସ୍ତେ ଉଲଗ୍ନ ରଜାଙ୍କର ନୂତନ ପୋଷାକକୁ ବାହାବାହା କଲେ । ସେମିତି ଦୁର୍ବୋଧ ବୋଲି କହି ନିର୍ବୁଦ୍ଧିଆ ହେବା ପାଇଁ ଏବେ ଆମ ଭିତରୁ କିଏ ବାହାରିବ ? କାହା ଜିଭରେ ହାଡ଼ ଅଛି ଏଭଳି ଲେଖାକୁ ନିନ୍ଦା କରିବା ପାଇଁ ।

ଅଜବ ଅଜବ ଶବ୍ଦ, ଶୈଳୀ ଓ ଘଟଣାର ଆହରଣ ଏତେ ମାତ୍ରାରେ ରହିଛି ଯେ ମୁଣ୍ଡ ଝିମ ଝିମ ହୋଇଯାଉଛି । ଅନେକ ଶବ୍ଦର ମାନେ ନଜାଣି, ବନାନ ନଜାଣି ଶବ୍ଦ ପ୍ରୟୋଗ କରୁଛନ୍ତି କେବଳ ଉକ୍ତ ଶବ୍ଦର ଶ୍ରୁତି ମଧୁର ସାଙ୍ଗୀତିକ ମୂଲ୍ୟବୋଧ ହେତୁ । ଏ ଭୁଲ ଧରିଲେ ଲେଖକ କୈଫିୟତ ଦେବେ ଯେ

ପ୍ରତିଟି ଲେଖକର ଏମିତି ଭୁଲ ରହିବ ଓ ଭୁଲ ଧରିବା ତାଙ୍କ ଲେଖା ପଢ଼ୁଥିବାର ପ୍ରମାଣ ମାତ୍ର । ବିଦେଶୀ ବହିରୁ ଚୋରି କରିବା ତ ଅତି ସାଧାରଣ ହୋଇ ପଡ଼ୁଛି । ତା' ଛଡ଼ା କଥାବସ୍ତୁକୁ ଶ୍ଳେଷ କରିବା ମଧ୍ୟ କେତେକଙ୍କ ରୁଟିନ ବନ୍ଧା କାମରେ ପରିଣତ ହୋଇ ସାରିଲାଣି । ଗଳ୍ପ କେଇମାସର କେତେକ ପତ୍ର ପତ୍ରିକା ଏହାର ପ୍ରମାଣ ଦେବେ ।

ସମସ୍ତ ଦୁର୍ବୋଧତା ରୂପୀ ବୌଦ୍ଧିକତା, ନୂତନତ୍ୱ ରୂପୀ ନକାପଣି-ପିଆର ମୁଖା କେବେ ନା କେବେ ଖୋଲିଯିବ । କାମୁ୍ୟ କାଫକା ନାମରେ ଶ୍ୟେନ ପୁଚ୍ଛ ଧରି କେତେଦିନ ତପ୍ତ ବୈତରଣୀ ପାରିହେବ ? ପାଠକର ଅଭିଯୋଗ ଏଡ଼େଇ ଏଡ଼େଇ କେତେଦିନ ଚାଲିବ ? ଅଗଣତାନ୍ତ୍ରିକ ସାହିତ୍ୟ କେତେଦିନ ବଞ୍ଚିବ ? ଏ ସାହିତ୍ୟ ସମସ୍ୟାର ସମାଧାନ ପାଇଁ ଚେଷ୍ଟା ଏବେ ହେବା ଉଚିତ । ଶିବଙ୍କ ସାପର ପ୍ରତାପ କମାଇବା ଦିଗରେ ଉଦ୍ୟମ କରାଯିବା ଉଚିତ ।



'ଅଧୁନା' ୨ୟ ବର୍ଷ, ୭ମ ସଂଖ୍ୟା
ଡିସେମ୍ବର; ୧୯୭୩
୨ୟ ବର୍ଷ, ୮ମ ସଂଖ୍ୟା
ଜାନୁଆରୀ, ୧୯୭୪

# ସାଂପ୍ରତିକ କଥା-ସାହିତ୍ୟରେ ନିଷ୍କ୍ରିୟ ନାୟକ

ଏକ ସମାଜବାଦୀ ସମାଜ ଗଠନ ନିମିତ୍ତ ସାହିତ୍ୟର ଯେଉଁ ଦାୟିତ୍ୱ ରହିଛି ତନ୍ମଧ୍ୟରେ ସାମାଜିକ ବିକାଶ ନିମିତ୍ତ ଜନଗଣଙ୍କୁ ଉଦ୍‌ବୁଦ୍ଧ କରିବା ଅନ୍ୟତମ । ସାହିତ୍ୟରେ ଏଥି ନିମିତ୍ତ ସଚେଷ୍ଟ ସାହସୀ ନାୟକର ଚିତ୍ରଣ ରହିବା ଆବଶ୍ୟକ । ଉକ୍ତ ନାୟକ ସାମାଜିକ ବିପ୍ଳବର ଭାଗୀଦାର ହୋଇଥିବା ଉଚିତ ।

ଏହାର ଅର୍ଥ ନୁହେଁ ଯେ ଏଭଳି ନାୟକ ସଂଯୋଜନା-ଶୈଳୀ ବାସ୍ତବ-ବାଦର ବିରୋଧାଚରଣ କରିବ । କାରଣ ସମାଜରେ ସମସ୍ୟା ସୃଷ୍ଟି ଏକ ସଂଘର୍ଷକୁ ଆଧାର କରି, ଏକ ଦ୍ୱନ୍ଦ୍ୱକୁ କେନ୍ଦ୍ରକରି ଓ ଏହି ସଂଘର୍ଷରେ ସଦା ସର୍ବଦା କେହି କେହି ବିଜୟୀ ହେଉଛନ୍ତି ତଥା ସମାଜବାଦ ପ୍ରତିଷ୍ଠା କରିବାରେ ସକ୍ରିୟ ଭାଗ ନେଇ ଆସିଛନ୍ତି । ଅନ୍ୟ ପକ୍ଷରେ ପୁଞ୍ଜିବାଦୀ ବ୍ୟବସ୍ଥାରେ ବ୍ୟକ୍ତି ସମାଜ ନିମନ୍ତେ ନିଷ୍କ୍ରିୟ ହୋଇପଡ଼େ । ନୀତି ଅନୀତିର ଭେଦାଭେଦ ବ୍ୟବସାୟୀର ଶାସ୍ତ୍ରରେ ନାହିଁ । ସେଠାରେ ଏକମାତ୍ର ଲକ୍ଷ୍ୟ ଲାଭ କରିବା । କେତେଜଣ ଚୋର ଶୋଷଣରେ ବ୍ୟସ୍ତ ଥିଲାବେଳେ ବ୍ୟକ୍ତି ହୁଏ ସ୍ୱାର୍ଥପର କାରଣ ନିଜ ପେଟ ପାଟଣା ଚିନ୍ତାରେ ମଗ୍ନ ରହି ବ୍ୟକ୍ତି ସମାଜର ସ୍ୱାର୍ଥ ପ୍ରତି ନିସ୍ପୃହ ହୋଇଥାଏ ।

ଅବସ୍ଥାଟି ଜଟିଳ ହୁଏ ଏକ ଭିନ୍ନ କ୍ଷେତ୍ରରେ । ଅର୍ଥର ପ୍ରାଚୁର୍ଯ୍ୟରେ ବଞ୍ଚିଥିବା ବ୍ୟକ୍ତି ସମାଜ ବିରୁଦ୍ଧରେ ଅପରାଧ କରେ ବୋଲି ଅପରାଧ ବିଜ୍ଞାନ

କରୁଥାଏ । ଏଣୁ ପୁଞ୍ଜିବାଦୀ ବ୍ୟବସ୍ଥାରେ ହୁଏତ ବ୍ୟକ୍ତି ନିଷ୍କ୍ରିୟ କିମ୍ବା ସମାଜ ବିରୁଦ୍ଧ-କାର୍ଯ୍ୟକଳାପରେ ସକ୍ରିୟ । ପରିବର୍ତ୍ତନ ପାଇଁ ହେଉ ବା ସମାଜବାଦୀ ସମାଜ ଗଠନ ନିମିତ୍ତ ହେଉ ବ୍ୟକ୍ତିକୁ ସକ୍ରିୟ ହେବାକୁ ପଡ଼ିବ ତଥା ଏଥିନିମିତ୍ତ ସାହିତ୍ୟରେ ମଧ୍ୟ ଧୀର, ସାହସୀ ନାୟକର ଚିତ୍ରଣ ରହିବା ଉଚିତ ।

ମାତ୍ର ଦୁଃଖର କଥା ଯେ ଏବର ଓଡ଼ିଆ ଗଳ୍ପ ସାହିତ୍ୟ ପ୍ରତି ଦୃଷ୍ଟିପାତ କଲେ ଲକ୍ଷ୍ୟ କରାଯାଏ ଯେ ଅଧିକାଂଶ ଚରିତ୍ର ନିଷ୍କ୍ରିୟ । କେବଳ ଏକ ଖାପ-ଖୁଆଇ ନେଇ, ମିଳାମିଶା କରି ବଞ୍ଚିବା ପାଇଁ ସମସ୍ତେ ବ୍ୟସ୍ତ ।

ଉଦାହରଣ ସ୍ୱରୂପ 'ସହକାର' ( ୧୯୭୩ ଅକ୍ଟୋବର ସଂଖ୍ୟା )ରେ ବୀଣାପାଣି ମହାନ୍ତିଙ୍କର 'ଅସରନ୍ତି' ଗଳ୍ପର ନାୟକ ନୀଳକଣ୍ଠ ଜଣେ ନିଷ୍କ୍ରିୟ ବ୍ୟକ୍ତି । "କିଏ ଦେଖିନେବ, କିଏ କ'ଣ କହିବ ଇତ୍ୟାଦି ଇତ୍ୟାଦି ହୋଇ ଜୀବନର ଅଧେ ସମୟ କଟିଗଲାଣି । ଏବେ ନିଜେ କ'ଣ କରିପାରିବ, ଭାବିଲେ ଠିକେ ହୁଅନ୍ତା ନାହିଁ ? ନାଁ ସେତିକ ହେବନି······ସେତିକ ପାଇଁ ଏତିକ ଚିନ୍ତା, ଏତେ ସମସ୍ୟା ଆଉ ଯୋଜନା ? ହାଏ ! କେଉଁଠି ଗୋଟିଏ ମନକୁ ମନ ବାଛି ଫିଟି ଯାଆନ୍ତା ନାହିଁ ? କୁଆଡ଼କୁ ! ଯୁଆଡ଼େ ଆଖି ଯାଉଛି ସିଆଡ଼େ ? ନାଁ ନାଁ ଗୋଟାଏ ଭଲ ଯାଗାକୁ—" ଏହାହିଁ ହେଉଛି ନୀଳକଣ୍ଠର ଚରିତ୍ର । ନୀଳକଣ୍ଠର ଯୌବନ ଯେପରି ଦିଗ୍‌ଭ୍ରାନ୍ତ ପଡେ !

ଯେପରି ଯୁବକ ଦିଗହରା ସେହିପରି ବୃଦ୍ଧ ପରିବର୍ତ୍ତିତ ସ୍ଥିତିରେ ମଧ୍ୟ ନିଷ୍କ୍ରିୟ । କାରଣ ପ୍ରତିଟି ବୃଦ୍ଧ 'ସନାତନ'ଙ୍କ ପରି ବୁଝୁଛନ୍ତି ଯେ ବ୍ୟସ୍ତ ହେବାର କୌଣସି କାରଣ ନାହିଁ; କିନ୍ତୁ ତଥାପି ସେ ବ୍ୟସ୍ତ ହୋଇ ପଡ଼ୁଛନ୍ତି । ପ୍ରତିକାରର ଉପାୟ ସେ ଜାଣିପାରୁଛନ୍ତି କିନ୍ତୁ ପ୍ରତିକାର କରିପାରୁ ନାହାନ୍ତି । ଜୀବନର ବହୁ ଅଭିଜ୍ଞତା ଲାଭ କରିଛନ୍ତି × × । କିନ୍ତୁ ସେ ସବୁ ଅଭିଜ୍ଞତାକୁ କାର୍ଯ୍ୟରେ ଲଗାଇବାର ସୁବିଧା ସେ, ଆଉ ପାଇପାରୁ ନାହାନ୍ତି । ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ଅନ୍ତର ଭିତରେ ଯେପରି ଗୋଟାଏ ଅଜଣା ବିପଦର ଭୟ ଓ ଆଶଙ୍କା ତାଙ୍କୁ ଅସ୍ଥିର କରି ପକାଉଛି ।" ( ଅନନ୍ତ ପ୍ରସାଦ ପଣ୍ଡା, ବ୍ୟସ୍ତ ହେଉଛ କାହିଁକି; ସହକାର, ପୂଜାସଂଖ୍ୟା ୧୯୭୩; ପୃ: ୩୬ )

ଏହି ନିଷ୍କ୍ରିୟତା ହେତୁ ବ୍ୟକ୍ତି ହୁଏତ କେବଳ ଏତିକ କହୁଛି "ଆଜିର ମଣିଷ ଭିତରେ ଯେଉଁ ଦେବକୀର ଗର୍ଭ ବେଦନା ଉଠୁଛି ତାର ଶେଷ ରୂପ

କିଏ ଲେଖୁଛି ॥

ଆଜିର ମଣିଷ ତୁମପରି ଜଣେ ଅସହାୟ କୃଷ୍ଣଙ୍କୁ ଅପେକ୍ଷା କରି ବସିନି । ତୁମେ ଫେରିଯାଅ ଶ୍ରୀକୃଷ୍ଣ । ତୁମର ଜୟନ୍ତୀକୁ ଫେରାଇ ନିଅ ।" ମାତ୍ର ଏ କାମନା ନିଷ୍ଫଳ କାମନା ମାତ୍ର । କାରଣ ତା'ପରେ "ଏକ ଭୟଙ୍କର ଉତ୍ତେଜନାରେ ବରୁଣାକ୍ଷ ବାବୁ ଅଣ୍ଟା, ଝିଅ, ବେଗ୍‌କୁ ଛାଡିଦେଇ ହଠାତ୍ ଉଠି ପଡ଼ୁ ପଡ଼ୁ ଫୋଲ ଦେହରେ ବାଡେ଼ଇ ହୋଇ ରାସ୍ତା ତଳକୁ ଗଡ଼ି ପଡ଼ିଲେ" ( ଅଚ୍ୟୁତାନନ୍ଦ ପତି, ଦେବକୀର ଗର୍ଭ ବେଦନା ) ଘଟି ଯାଉଛି ।

ନଚେତ୍ ନାୟକ ବିକାରଗ୍ରସ୍ତ ହୋଇପଡ଼ୁଛି । ଓଡ଼ିଆ ଗଳ୍ପ ସାହିତ୍ୟରେ ଏହି ଧରଣର ପଙ୍ଗୁ, କ୍ଲୀବ, ନିଷ୍କ୍ରିୟ ବା ବିକାରଗ୍ରସ୍ତ ନାୟକ ସଂଯୋଜନର ବାହୁଲ୍ୟ ପ୍ରଥମତଃ ସମାଜବାଦ ବିରୋଧୀ, ଦ୍ୱିତୀୟତଃ ଏହା ଇଉରୋପୀୟ ଚିନ୍ତା-ଧାରାର ପ୍ରଭାବ ମାତ୍ର ଓ ତୃତୀୟତଃ ଆଜିର ବିଫଳ ମିଶ୍ର ଅର୍ଥନୈତିକ ବ୍ୟବସ୍ଥାରେ ପୁଞ୍ଜିବାଦୀ ସମାଜ ବ୍ୟବସ୍ଥାର ପରିଣତି । ଏହା ଆସନ୍ନ ସାଂସ୍କୃତିକ ସଙ୍କଟର ଅଗ୍ରଦୂତ ।

କଥାନାୟକ ମାଧ୍ୟମରେ ପ୍ରତିଭାସିତ ଏବଂବିଧ ଆସନ୍ନ ସାଂସ୍କୃତିକ ସଙ୍କଟର କାରଣ ବାହ୍ୟ ଏବଂ ଆନ୍ତରିକ ଭେଦରେ ଦ୍ୱିବିଧ । ବାହ୍ୟ କାରଣ ହେଉଛି ଯେ ପୁଞ୍ଜିବାଦୀ ସମାଜ ବ୍ୟବସ୍ଥାର ଉଦୟ, ମାନବିକ ମୂଲ୍ୟବୋଧରେ ଯେଉଁ କ୍ରମିକ ବିଘଟନ ସୃଷ୍ଟି କଲା ତାହାର ଫଳ ହେଉଛି ଏହି ଧରଣର ପୌରୁଷହୀନ କଥା-ନାୟକ ସୃଷ୍ଟି ।

ଊନବିଂଶ ଶତକର କଥାସାହିତ୍ୟରେ ସଂଘର୍ଷର ଚିତ୍ର ଥିଲେ ମଧ୍ୟ ତହିଁରେ ବିଜୟର ଡ଼ଙ୍କା ବାଦନ କରାଯାଇଥିଲା । ପୁରାତନ ବା ପ୍ରଚଳିତ ସମାଜବ୍ୟବସ୍ଥାକୁ ଧ୍ୱଂସକରି ଏକ ସୁସ୍ଥ ସୁନ୍ଦର ନୂତନ ସମାଜ ଗଠନ କରିବାର ଅମିତ ଓଜ, ତେଜ ଓ ଶକ୍ତି ସମନ୍ୱିତ ଚରିତ୍ର ଜନଗଣର ପ୍ରାଣସ୍ପର୍ଶ କରିଥିଲେ । ବାଲ୍‌ଜାକ୍‌ଙ୍କର 'ଲ ମିଜରାବ୍‌ଲ୍'ର ନାୟକ ଜା ବାଲ୍‌ଜ୍ୟା ନିଜେ ଜଣେ ଦୁଷ୍କର୍ମୀ ପାପୀ ହୋଇ ମଧ୍ୟ ଜୀବନର ସକଳ ଘାତପ୍ରତିଘାତ, ସଂଘର୍ଷ, ସଂଗ୍ରାମ ଓ ଘୃଣା, ପ୍ରତିହିଂସା ଉପରେ ପ୍ରେମ ଓ ମାନବତାର ବିଜୟ ଘୋଷଣା କରିବା ପାଇଁ ସମର୍ଥ ଥିଲା । ତାଙ୍କର ଅନ୍ୟତମ ଉପନ୍ୟାସ, 'ଫାଦର ଗୋରିଓ'ର ନାୟକ ପ୍ୟାରିସର କବରଖାନା ଉପରେ ଠିଆହୋଇ ସମଗ୍ର ସାମନ୍ତବାଦୀ ଓ ପୁଞ୍ଜିବାଦୀ ବ୍ୟବସ୍ଥାକୁ ଚ୍ୟାଲେଞ୍ଜ କରିବାକୁ ସମର୍ଥ ହୋଇଥିଲା ।

ପୁନଶ୍ଚ ସେହିପରି ଅନ୍ୟ ଫରାସୀ ଉପନ୍ୟାସକାର ଷ୍ଟେଣ୍ଡାଲ୍‌ଙ୍କର କିଶୋର ନାୟକ, ଏମିଲ ଜୋଲାଙ୍କର ନାୟକ ସକଳ କମ୍ବା ହ୍ୟୁଗୋଙ୍କର 'ନାବିଦେମ'ର ନାୟକ କାସିମୋଡ଼ୋ ଆଦି ଧ୍ୱଂସ ସମାଜବ୍ୟବସ୍ଥାକୁ ବଦଳାଇ, ଏକ ସୁନ୍ଦର ନୂତନ ସମାଜ ଗଠନ କରିବାରେ ସମର୍ଥ ହୋଇଛନ୍ତି । ଜୋଲାଙ୍କର 'ଜର୍ମିନେଲ୍' ଏହି ଦୃଷ୍ଟିରୁ ଏକ ସଫଳ ଉପନ୍ୟାସ । ଇଂଲଣ୍ଡରେ ଡିକେନ୍‌ସ୍ ମଧ୍ୟ ମାନବତାର ଜୟଜୟକାର କରିଛନ୍ତି । ଅଥଚ ଏବର କଥାନାୟକ ଏକ ସ୍ୱତନ୍ତ୍ର, ଅଦ୍ଭୁତ ଓ ଭିନ୍ନ ଧରଣର । ତାର ପ୍ରତିବାଦ କରିବାର ଶକ୍ତି ନାହିଁ, ବିପ୍ଳବ ବା ବିଦ୍ରୋହ କରିବାର ସାହସ ନାହିଁ; ନା ଚ୍ୟାଲେଞ୍ଜ କରିବାର ଶକ୍ତି ଅଛି ନାଁ ଅନ୍ୟର ଚ୍ୟାଲେଞ୍ଜକୁ ଗ୍ରହଣ କରି ପାରୁଛି । ଏଣୁ ନୈରାଶ୍ୟମୟ ଅନୁଭୂତିର ଚିତ୍ରଣ ଅଧିକାଧିକ କରିବା, କଷ୍ଟମୟ ପରିବେଶ ସୃଷ୍ଟି କରିବାର ପ୍ରବୃତ୍ତି ବଢ଼ି ଚାଲିଛି ।

ଇତିହାସ ପ୍ରତି ଦୃଷ୍ଟି ପାତ କଲେ ଆମେ ଲକ୍ଷ୍ୟକରିବା ଯେ—ପୁଞ୍ଜିବାଦର ବିକାଶ ସାହିତ୍ୟରେ ପରିବର୍ତ୍ତନର କାରଣ ହୋଇଛି । ଗତାନୁଗତିକ ଅନ୍ଧପରମ୍ପରାରୁ ମୁକ୍ତିକର ବିଶ୍ୱସଂସ୍କୃତିରେ ନୂତନତା ଭରିବା ଥିଲା ପୁଞ୍ଜିବାଦର ଦାନ ଓ ଏହା ସାମନ୍ତବାଦୀ ଦାସତ୍ୱର ବିରୋଧୀ ହୋଇ ବ୍ୟକ୍ତିସ୍ୱାତନ୍ତ୍ର୍ୟର ପକ୍ଷପାତୀ ଥିଲା । ମେସିନ ସହିତ କାମକରିବା ନିମିତ୍ତ ବିଶେଷ ଧରଣର ଶ୍ରମିକ ଦର୍କାର ହୁଅନ୍ତି ଶିକ୍ଷାର ପ୍ରସାର କରିବା ଥିଲା ଏହାର ଅନ୍ୟତମ ଲକ୍ଷ୍ୟ । ପୁଞ୍ଜିବାଦ ପ୍ରଥମେ ମନୁଷ୍ୟ ମନରେ ଗଭୀର ଆଶା ଜାଗ୍ରତ କରାଇଥିଲା ଯେ ସେ ଅନ୍ଧକାରରୁ ମୁକ୍ତିଲାଭ କରି ଏକ ନୂତନ ଆଲୋକକୁ ଯାତ୍ରା କରୁଛି, ଏକ ନୂତନ ସଂସ୍କୃତିର ନିର୍ମାଣ କରୁଛି । ଏଣୁ ସେ ସମୟର ସାହିତ୍ୟରେ ଚରିତ୍ର ସକଳ ପୁରୁଷତ୍ୱର ତେଜ ତଥା ନୂତନ ସଂସ୍କୃତିର ନିର୍ମାଣ କ୍ଷମତାରେ ବିଶ୍ୱାସୀ ଥିଲେ । ଯେପରି ଡିକେନ୍‌ସଙ୍କର ସମସ୍ତ ଚରିତ୍ରଗୁଡ଼ିକ ବାଲ୍ୟାବସ୍ଥାରେ ନିର୍ଦ୍ଧନ, ମାତ୍ର ପରେ ଦାରିଦ୍ର୍ୟ ସହ ସଂଘର୍ଷ-କରି ବିଜୟୀ ହୋଇ ଶେଷରେ ସମାଜରେ ଉଚ୍ଚସ୍ଥାନ ଲାଭ କରିପାରୁଥିଲେ ।

ବ୍ୟକ୍ତି ଏବଂ ବ୍ୟବସ୍ଥାର ଏହି ଭୟଙ୍କର ଅନ୍ତର୍ବିରୋଧ ଓ ତଜ୍ଜନିତ ମାନବାତ୍ମାରେ ସୃଷ୍ଟି ବିକାରର ମର୍ମସ୍ପର୍ଶୀ ଚିତ୍ର ପ୍ରଦାନ କରିବାରେ ବାଲଜାକ୍ ଅଗ୍ରଣୀ । ସେ ନିଜେ ଜଣେ ନିମ୍ନଶ୍ରେଣୀର ସନ୍ତାନ ଥିଲେ ଓ ଅର୍ଥଲାଳସା ବ୍ୟକ୍ତିକୁ ହୀନାତିହୀନ ବିକାର ଦ୍ୱାରା ପୀଡ଼ିତ କରିଥାଏ ବୋଲି ଅନୁଭବ କରିଥିଲେ । ଏଣୁ ତାଙ୍କର ସକଳ ଚରିତ୍ର ଅର୍ଥଲାଭ ନିମିତ୍ତ ନୀଚକାର୍ଯ୍ୟ କରିବାକୁ କୁଣ୍ଠିତ ଥିଲେ,

ସେମାନେ ସକଳ ପ୍ରକାର ପାପକର୍ମ ଓ ଅପରାଧ କରୁଥିଲେ ଏବଂ ସେମାନଙ୍କ ଆତ୍ମା ପାଶବିକତାରେ ଆବଦ୍ଧ ଥିଲା । ଜୀବନ ସଂଘର୍ଷରେ ସେମାନେ ଥିଲେ ସ୍ୱାର୍ଥପର । ସମସ୍ତ ମାନବିକ ସମ୍ପର୍କକୁ କଳୁଷିତ କରି ପାରସ୍ପରିକ ମମତା ପ୍ରେମ ଓ ସହଯୋଗ ଥିଲା ଆକାଶ କୁସୁମ ପ୍ରାୟ । ଧନ ସଞ୍ଚୟ ଥିଲା ମୁଖ୍ୟ । ବ୍ୟକ୍ତି ସ୍ୱାତନ୍ତ୍ର୍ୟ ଜଣକୁ ଅନ୍ୟ ଜଣକ ଦ୍ୱାରା ଶୋଷିତ ହେବାର ସୁଯୋଗ ସୃଷ୍ଟି କରୁଥିଲା । କ୍ଷୁଧିତ ପଶୁପରି ପାରସ୍ପରିକ ସହଯୋଗ ଓ ସହାନୁଭୂତିକୁ ଲୋପକରି ଜଣେ ଅନ୍ୟଜଣଙ୍କର ଗଳାରେ ତୀକ୍ଷ୍ଣ ଦନ୍ତାଘାତ ସୃଷ୍ଟି କରିବାରେ ଥିଲା ତତ୍ପର ।

ଏହି ଭଳି ମାନବାତ୍ମା ଏକ ଭୟାନକ ଅପରାଧର ଶିକାର ହୋଇଥିଲା ଓ ସାହିତ୍ୟରେ ବହୁ ସଂଖ୍ୟାରେ ଅପରାଧୀର ଚରିତ୍ର ସଂଯୋଜିତ ହୋଇଥିଲା । ଏ ସାହିତ୍ୟ ଥିଲା ଡିକାଡେଣ୍ଟ ସାହିତ୍ୟ । ଗୋତିୟର, ଫ୍ଲାଉବର୍ଟ, ମୋପାସାଁ ଓ ଓ୍ୱାଇଲ୍ଡ ଆଦି ଲେଖକଗଣ ପୁଞ୍ଜିବାଦ ବିରୋଧୀ ଥିଲେ ସତ ହେଲେ ସେମାନ-ଙ୍କର ବିରୋଧ ସମନ୍ୱୟାତ୍ମକ ନ ଥିଲା ଏବଂ ଆତ୍ମରତିରେ ସେମାନେ ଲିପ୍ତ ଥିଲେ । ଏଣୁ ଏହି ଧରଣର ବିଚ୍ଛିନ୍ନ ଲେଖକଗଣ ସମସ୍ତ ମାନବତାରେ ସାମ୍ୟ ପ୍ରତିଷ୍ଠା କରିବା ଅପେକ୍ଷା ମାନବୀୟ ଗୌରବର ଏକାନ୍ତ ପ୍ରତିଷ୍ଠାର ସ୍ୱପ୍ନ ଦେଖୁଥିଲେ ।

ଫଳସ୍ୱରୂପ ସେମାନଙ୍କ ପରି ସେମାନଙ୍କ କଥା ନାୟକ ବାହ୍ୟ ସତ୍ୟକୁ ଗ୍ରହଣ କରିବା ନିମିତ୍ତ ପ୍ରସ୍ତୁତ ନ ଥିଲେ ଓ ସମସ୍ତ ସୃଜନଶୀଳତା ହରାଇ ବସିଥିଲେ । ଏହାର ପ୍ରତୀକ ହେଉଛି ମୋପାସାଁଙ୍କର ମୃତ୍ୟୁ ।

ମୋପାସାଁ ପ୍ରତିଦିନ ଦର୍ପଣରେ ନିଜ ରୂପ ଦେଖୁଥିଲେ । ମାତ୍ର ଦିନେ ଏକ ଭୟାନକ ଅନ୍ତର୍ଦ୍ୱନ୍ଦ୍ୱଗ୍ରସ୍ତ କ୍ଷଣରେ ତାଙ୍କର ମନେ ହେଲା ଯେ ଦର୍ପଣରେ ତାଙ୍କର ପ୍ରତିଛବି ଲୁଚି ଯାଇଛି ଓ ସେହିଦିନ ସେ ପାଗଳ ହୋଇଗଲେ । ଠିକ୍ ଏହାହିଁ ଥିଲା ସକଳ ଡିକାଡେଣ୍ଟ ଲେଖକଙ୍କର ମନୋବୃତ୍ତି ଓ ସେମାନେ ପ୍ରତିଟି ବସ୍ତୁରେ ନିଜର ସ୍ୱରୂପ ଖୋଜୁଥିଲେ । ସତ୍ୟକୁ ଗ୍ରହଣ କରିବାର ସାମର୍ଥ୍ୟହୀନତା ଓ ଆତ୍ମବିଶ୍ୱାସ-ହୀନତା ପୁରୁଷଉଦ୍ୟମହୀନ ନିଷ୍କ୍ରିୟତା ଦିଗକୁ, ଆମମାନଙ୍କୁ ଟାଣି ନେଇଥିଲା ।

ପୂର୍ବରୁ ମୁଁ କହି ରଖିଛି ଯେ ପୁଞ୍ଜିବାଦ ଯେଉଁ ଅମାପ ଆଶାର ସନ୍ଧାନ ଦେଇଥିଲା ତାହା ବ୍ୟକ୍ତିସତ୍ତାକୁ ଅପୂର୍ବ କଳ୍ପନାଶ୍ରୟୀ କରି ଦେଇଥିଲା । ମାତ୍ର କ୍ରମେ

ଏହି ବ୍ୟବସ୍ଥାର କୁଫଳ ଜନଗଣର ଚିତ୍ତରେ ଭୟଙ୍କର ଶୂନ୍ୟତା ତଥା ଦୁଃଖଦ ନିଷ୍କ୍ରିୟତା ଭରିଦେଲା; କିନ୍ତୁ ପୁଞ୍ଜିବାଦର କବଳରୁ ମୁକ୍ତ ହେବାକୁ ବ୍ୟକ୍ତି ସର୍ବଦା ଅସମର୍ଥ ଥିଲା । ତା ମନ ଭିତରେ ଭରି ରହିଥିଲା ନିଷ୍ଫଳ କ୍ରୋଧ; ଏକ ଶକ୍ତିହୀନତା । ଏଣୁ ଗୋପୀସାହୁକୁ ଅନ୍ଧହୋଇ ବସି ପାଖରେ ହାତ ପତାଇବାକୁ ପଡ଼ିଲା, ଯେଉଁଥିପାଇଁ ସେ ଥିଲା କୁଣ୍ଠିତ ଓ ବାଧ୍ୟ, ଗଠନ କରିବାର ଇଚ୍ଛା ତାର ନ ଥିଲା, ନା ଥିଲା ଧ୍ୱଂସ କରିବାର । ଖାଲି ମାରିବାରେ ଅଶ୍ରୁମନ୍ଥନ କରିବା ହିଁ ଥିଲା ଏକମାତ୍ର ସ୍ୱାଭାବିକ ପ୍ରତିକ୍ରିୟା । ସେହିପରି 'ମାଗୁଣିର ଶଗଡ଼'ରେ ମାଗୁଣି । ଅନନ୍ତପ୍ରସାଦ ପଣ୍ଡା ଅତ୍ୟଧିକ ଭାବନା ପ୍ରବଣ ସୁକୁମାର, ଏଣୁ 'ଗୋପୀସାହୁର ଦୋକାନ'ରେ ବରଂ ଭାଗ୍ୟର କରାମତି ବେଶୀ ଉପଲବ୍ଧି କରାହୋଇଛି । ଠିକ୍ ଏହିପରି ହୋଇଥିଲା ହାର୍ଡିଙ୍କ ଉପନ୍ୟାସ ଗୁଡ଼ିକରେ, ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ'ରେ । 'ଛ'ମାଣ ଆଠଗୁଣ୍ଠ'ରେ ଭାଗ୍ୟରେ ତାଡ଼ନାରେ ପଡ଼ି ରାମଚନ୍ଦ୍ର ମଙ୍ଗରାଜ ଜେଲକୁ ଯାଇଛନ୍ତି । ନାଟକୀୟ ଭାବରେ ଭଗିଆ ତାକୁ ଆହତ କରିଛି । ମଙ୍ଗରାଜଙ୍କ ବିରୁଦ୍ଧରେ ଏହା ଭଗିଆର ସଚେତନ ବିଦ୍ରୋହ ନୁହେଁ । କିନ୍ତୁ ଗମ୍ଭୀର ବୁଦ୍ଧିଜୀବୀ ଔପନ୍ୟାସିକ ଆନାତୋଲ୍ ଫ୍ରାନ୍ସ୍‌ଙ୍କର ଶୈଳୀ ଥିଲା ଭିନ୍ନ । ଇଂଲଣ୍ଡ ଏକ ବ୍ୟବସାୟୀ ଦେଶ ଥିଲା । ପ୍ରତ୍ୟେକ ଇଂରେଜ ଘରତରୁ ସୁନା ପାଇବାର ରଙ୍ଗୀନ କଳ୍ପନାରେ ମସ୍‌ଗୁଲ୍ ଥିଲେ । କିନ୍ତୁ ସମଗ୍ର ଇଉରୋପର ସାଂସ୍କୃତିକ କେନ୍ଦ୍ର ଫ୍ରାନ୍ସ୍‌ରେ ଏବଂବିଧ ସାଂସ୍କୃତିକ ବିଘଟଣର ପ୍ରକୃତ ରୂପ ଦେଖି ହେଉଥିଲା । ଏକ ବିଶେଷ ଧରଣର ପାଗଳାମି, ବିଚିତ୍ର, ଅପରାଧପ୍ରବଣତା, ଆସନ୍ନ ଭୟଙ୍କର ସଙ୍କଟରେ ଭୟ, ଆନ୍ତରିକ ଶୂନ୍ୟତା, ପୁଞ୍ଜିବାଦୀ ବିକୃତି ତଥା ଖ୍ରୀଷ୍ଟ ଶୂନ୍ୟତା ବ୍ୟକ୍ତିସତ୍ତାକୁ କବଳିତ କରିଥିଲା । ବିଶିଷ୍ଟ ଚିତ୍ରଶିଳ୍ପୀ ଭାନ୍‌ଗୋଗ୍ ତାଙ୍କ ଭାଇଙ୍କ ନିକଟକୁ ଫ୍ରାନ୍ସ ସହର ବିଷୟରେ ଚିଠିରେ ଲେଖିଥିଲେ — "ମୁଁ ଏଇ ଲୋକଗୁଡ଼ିକୁ ଗଲା ତିନିମାସ ଧରି ଦେଖି ଆସୁଛି, ମୁଁ କିନ୍ତୁ ସ୍ପଷ୍ଟ ଲକ୍ଷ୍ୟ କରୁଛି ଯେ ଏମାନେ ସମସ୍ତେ ବିକ୍ଷିପ୍ତ, ବିଚ୍ଛିନ୍ନ । ସେମାନଙ୍କର ଆଖିକୁ ଲକ୍ଷ୍ୟ କର । ଏ ସମଗ୍ର ଅଞ୍ଚଳରେ ଜଣେ ହେଲେ ସୁସ୍ଥ, ସାଧାରଣ ଓ ଯୁକ୍ତିସଙ୍ଗତ ବ୍ୟକ୍ତି ନାହାନ୍ତି । ମୋର ମନେହୁଏ ଯେ ଏ ଅଞ୍ଚଳର ସବୁ ଲୋକେ ମୃଗୀ ରୋଗରେ ପୀଡ଼ିତ । ନିଜର ଚେତନାକୁ ଚାବୁକରେ ମାରି ଏମାନେ ଭାବାବେଶର ଚରମସୀମା ପର୍ଯ୍ୟନ୍ତ ଉଠାଇ ନେଉଛନ୍ତି ଯେ ମନେ ହେଉଛି ସତେ ଯେମିତି ଏବେ ଏବେ ସମସ୍ତେ ମୂର୍ଚ୍ଛା ମାରି ଯିବେ, ମୁହଁରୁ ନାଳ ବୋହିବ; କିନ୍ତୁ ବଡ଼ ଆଶ୍ଚର୍ଯ୍ୟର କଥା ଯେ ଯେମିତି ଜମା ହେଉନାହିଁ । ମନେ ହେଉଛି ହେଇ ଚରମସୀମା ଆସିଗଲା, ହେଇ ଚରମସୀମା ଆସିଗଲା; କିନ୍ତୁ କାହିଁ ?

ଚରମସୀମାର ଦେଖା ଦର୍ଶନ ନାହିଁ । ଗଲା ତିନିମାସ ଧରି ମୁଁ ଅପେକ୍ଷା କରିଛି ଯେ ବିପ୍ଳବ ଆସିବ । କୌଣସି ନା କୌଣସି ବିପ୍ଳବ ସଙ୍ଘଟିତ ହେବ । କୌଣସି ନା କୌଣସି ଜ୍ୱାଳାମୁଖୀରେ ବିସ୍ଫୋରଣ ହେବ । କେତେଥର ମୁଁ ଭାବିଲିଣି ଯେ ଏ ସହରର ଲୋକଗୁଡ଼ିକ ପାଗଳ ହୋଇ ପରସ୍ପରର ଗଳା ମୋଡ଼ିବାକୁ ଲାଗିଲେ । ପ୍ରଳୟର ପ୍ରଥମ ମୁହୂର୍ତ୍ତ ଆସନ୍ନ । ସେତେବେଳେ ଏକ ଭୟାନକ ଦୃଶ୍ୟ ଉପସ୍ଥିତ ହେବ । ହତ୍ୟା, ଜଳାପୋଡ଼ା, ବଳାତ୍କାର, ସର୍ବନାଶ—କ'ଣ ସବୁ ନ ହେବ ?"

ଭାନଗାଗ୍‌ ଏ ଯେଉଁ ଚିତ୍ର ଦେଲେ ତାହା ସମଗ୍ର ପୁଞ୍ଜିବାଦୀ ବ୍ୟବସ୍ଥାରେ ଦେଖା ଦେଇଥିଲା ଓ ତାଙ୍କ ଦ୍ୱାରା ସୂଚିତ ବିସ୍ଫୋରଣ ୧୯୧୪ ମସିହାରେ ହିଁ ସଂଘଟିତ ହେଲା । ଇଉରୋପର ମାଟି ସେନାବାହିନୀର ପ୍ୟାରେଡ଼ରେ କମ୍ପି ଉଠିଥିଲା । ଇଉରୋପର ମହାସାଗରରେ ବୁଡ଼ାଜାହାଜ ଗୁଡ଼ିକ ଖେଳି ବୁଲୁଥିଲେ । ତୋପର ଶବ୍ଦରେ ଗଗନ ପବନ ପ୍ରକମ୍ପିତ ହେବାକୁ ଲାଗିଥିଲା । କାଇଜରଙ୍କର କମାଣ ପୁଞ୍ଜିବାଦୀ ପ୍ରଳୟର ଘୋଷଣା କରିଦେଲା । ବ୍ୟକ୍ତି ବ୍ୟକ୍ତିର ଶିରଚ୍ଛେଦନ କରିବାକୁ ବ୍ୟାକୁଳ ହୋଇ ଉଠିଲା । ପୁଞ୍ଜିବାଦର ଗୋଲାମ ବିଜ୍ଞାନର ବୁଭୁକ୍ଷୁ କଙ୍କାଳ ସଂସ୍କୃତି ଓ ମାନବତାର ମୂଳଦୁଆ ଖୋଳି ଫିଙ୍ଗିଦେଲା । ଦୀର୍ଘ ପାଞ୍ଚବର୍ଷ ଧରି ଏ ନରମେଧ ଯଜ୍ଞ ଚାଲିଲା ।

ଏହି ଯୁଦ୍ଧ ଯଦିଓ ବନ୍ଦ ହୋଇଗଲା ତଥାପି ଏ ଭୟାନକ ନରସଂହାର ହେତୁ ମାନବାତ୍ମା ଆତଙ୍କିତ ହୋଇ ପଡ଼ିଥିଲା । ପୁରୁଷତ୍ୱ, ଶକ୍ତି ସାମର୍ଥ୍ୟ ହରେଇ ଦେଇଥିଲା । ଯୁଦ୍ଧ'ର ପ୍ରଭାବ ପଡ଼ିଥିଲା ମନ ଉପରେ । ଯୁଗବ୍ୟାପୀ ଅବଦମିତ ପାଶବିକତା, ମାନସିକ ବିକାର ପ୍ରକାଶିତ ହେଲା । ଫ୍ରାନ୍ସ୍‌ରେ ଲେଖକମାନେ ଅପରିପକ୍ୱ ରଚନାରେ ପ୍ରବୃତ୍ତ ହେଲେ । କାଫକା ଏବଂ ବିଧ ଯନ୍ତ୍ରଣାର ଚିତ୍ର ଉପସ୍ଥାପିତ କଲେ । ଡି. ଏଚ୍‌. ଲରେନ୍ସ ତଦାନୀନ୍ତନ ସମୟର ପୁରୁଷତ୍ୱହୀନତା ଓ ଦେବାଳିଆ ପରିସ୍ଥିତିର ଚିତ୍ରଣରେ ବ୍ୟସ୍ତ ରହିଲେ । କାମ ବିକୃତିର ଚିତ୍ର ଅଙ୍କନ କଲେ ।

ଲରେନ୍ସ ଦାର୍ଶନିକ ରସେଲଙ୍କୁ ଏକ ପତ୍ରରେ ନିଜର ମନୋଭାବ ସ୍ପଷ୍ଟ ପ୍ରକାଶ କରିଥିଲେ । ସେ ଲେଖିଥିଲେ—

"ଆମର ଦୈନନ୍ଦିନ ଜୀବନର ଆଧାର ରୂପେ ଅର୍ଥକୁ ଛାଡ଼ି ଅନ୍ୟ କୌଣସି ଏକ ଆଧାରକୁ ଖୋଜିବାକୁ ପଡ଼ିବ । ଆର୍ଥିକ ସମସ୍ୟାରୁ ଆମକୁ ମୁକ୍ତିଲାଭ

କରିବାକୁ ହେବ । ପ୍ରଶାସନିକ ପଦ୍ଧତିରେ ବୈପ୍ଳବିକ ପରିବର୍ତ୍ତନ କରିବାକୁ ହେବ ।

× × × ×

ଏମିତି କେତେ କରିବା ଦରକାର । 'ମାନବାତ୍ମା ମୁକ୍ତ ହେଉ' ଏଭଳି ସ୍ଲୋଗାନର ମାନେ କିଛି ନାହିଁ, ଯଦି ତାର ଯୋଡ଼ା ପାଦକୁ ଖିଷଣ କଷ୍ଟ ଦିଏ ଓ ଆମକୁ ଚାଲିବାକୁ ଅସମର୍ଥ କରି ପକାଏ । ଆମର ସମସ୍ତ ଆଦର୍ଶ ପମ୍ପା ଯଦି ଆମେ ପୁଞ୍ଜିବାଦର ଶୃଙ୍ଖଳକୁ ଭାଙ୍ଗି ନ ଦେଉ ।"

ଏବଂ ସେ ଏକଥା ମଧ୍ୟ ମର୍ମେ ମର୍ମେ ଅନୁଭବ କରିଥିଲେ ଯେ ପୁଞ୍ଜିବାଦ ବ୍ୟକ୍ତିକୁ ମାନସିକ୍ଭାବରେ ପରିସ୍ତତ କରି ତୋଳିଛି । ସେ ସମୟର ପ୍ରସିଦ୍ଧ ଇଂରାଜୀ ଔପନ୍ୟାସିକ ଇ. ଏମ୍. ଫଷ୍ଟରଙ୍କର କଥା ମଧ୍ୟ ଏ ଜଠିରେ ଉଲ୍ଲେଖ କରିଥିଲେ । ଅବିବାହିତ ଫଷ୍ଟର ୧୯୧୫ ମସିହା ଫେବ୍ରୁୟାରୀ ମାସରେ ଆସି ଲରେନ୍ସଙ୍କ ସାଙ୍ଗରେ ରହିଲେ । ତାଙ୍କ ବିଷୟରେ ଉଲ୍ଲେଖ କରି ଲରେନ୍ସ ଲେଖିଥିଲେ—

"ଆମର ଶରୀରକୁ ମୁକ୍ତ କରିବା ପାଇଁ ପ୍ରକୃତରେ ବିପ୍ଳବ ଏକାନ୍ତ ଆବଶ୍ୟକ । ଅତୃପ୍ତ ଶରୀରରେ ମୁକ୍ତ ମାନବାତ୍ମାର ନିବାସ କଦାପି ସମ୍ଭବ ନୁହେଁ । ଫଷ୍ଟରଙ୍କ ଜୀବନ ଏହାର ଉଦାହରଣ । ଜଗତର ସମସ୍ତ କାବ୍ୟ କ'ଣ ତାଙ୍କର ପୁରୁଷତ୍ୱର ତୃଷା ମେଣ୍ଟାଇବାରେ ସମର୍ଥ ହେବ ବିଶେଷ କରି ଯେତେବେଳେ ସେ ଜାଣନ୍ତି ଯେ ତାଙ୍କର ତୃପ୍ତି ନାରୀରଙ୍କ ସମ୍ଭୋଗରେ ନିହିତ ? ସେ ନିଜକୁ ବହି- ଲେଇବାକୁ ଚେଷ୍ଟା କରୁଛନ୍ତି । ଏହାହିଁ ଦେଖି ଦୁଃଖ ଲାଗୁଛି ଯାହା । ଏ କ୍ଷେତ୍ରରେ ସେ ଅବ୍ୟବସ୍ଥିତ କାହିଁକି ହେଉଛନ୍ତି ? କୌଣସି ଜଣେ ନାରୀକୁ ଗ୍ରହଣ କରି ସ୍ୱୀୟ ଆଦିମ ପ୍ରବୃତ୍ତିକୁ ତୃପ୍ତ କରାଉ ନାହାନ୍ତି କାହିଁକି ?

କିନ୍ତୁ ସେ ତାହା କରୁ ନାହାନ୍ତି, କାରଣ ସେ ଭଲରୂପେ ଜାଣନ୍ତି ଯେ କେବଳ ନିଜ ପ୍ରବୃତ୍ତି, ନିଜ ତୃଷାକୁ ତୃପ୍ତ କରିବା ଏକମାତ୍ର ଧ୍ୟେୟ ନୁହେଁ । ତାଙ୍କର ଅନ୍ତିମ ଧ୍ୟେୟ ହେଉଛି ସେହି ନିରନ୍ତର ଚାଲିଥିବା ପ୍ରକ୍ରିୟା ଯାହାକୁ ସାମାଜିକ ଭାବାବେଶର ନାମ ଦିଆଯାଇଥାଏ—ମାନବତା ପ୍ରତି ପ୍ରେମ, ମାନବ- ତାର ମଙ୍ଗଳ ପ୍ରତି କିଛି କରିବାର ଇଚ୍ଛା, କିନ୍ତୁ ଆପଣ ଏହି କୁଟିଳ କାର୍ଯ୍ୟାବଳୀ ଦେଖିଲେ ତ ? ଶିର ପ୍ରପୀଡ଼ିତ ପ୍ରମେଥିଉସ୍ ପାଖକୁ ଯାଇ ତାକୁ ସୁନ୍ଦର କାହାଣୀ ଶୁଣାଇବ । ଯେତେବେଳେ ଶାଗୁଣା ବସି ତା'ର ଅନ୍ତବୁଜୁଳାକୁ ଟିକି ଟିକି କରି ଖାଉଥିବ ସେତିକିବେଳେ ମୁଁ କ'ଣ ନିଜର ଅନ୍ତରାତ୍ମା ନିଜର ତର ପ୍ରପୀଡ଼ିତ

ପ୍ରମେଥିଉସ ପାଖକୁ ଯାଇ ତାଙ୍କୁ ସୁନ୍ଦର ସୁନ୍ଦର ଗପ ଶୁଣାଇବ ? ମୁଁ ଲଜ୍ଜାରେ ମୁହଁ ଘୋଡ଼ାଇ ଦେବା ଉଚିତ । ମୁହଁ ବୁଲେଇ ନେବ । ମୋର ସେହି ନିରର୍ଥକ, ମୂଲ୍ୟହୀନ, ଶକ୍ତିହୀନ ଶବ୍ଦମାଳା ପାଇଁ ଲଜ୍ଜିତ ହେବା ଉଚିତ । ଆଉ କ'ଣ ମୋ ସ୍ତ୍ରୀ ପାଖକୁ ଯିବ ? ନିଜକୁ ନିଜେ ଚିହ୍ନି ନେବାପାଇଁ ? ଠିକ୍ କଥା; କିନ୍ତୁ ନିଜକୁ କେବଳ ପ୍ରସ୍ତୁତ କରି ନେବାକୁ ହେବ; କିନ୍ତୁ କେଉଁଥିପାଇଁ ? ସେହି ଅଜ୍ଞାତ ପ୍ରଦେଶର ସନ୍ଧାନରେ ଯାହାର ନାମ ନାରୀ ବୋଲି ପ୍ରଦତ୍ତ ! ତଥାପି ମୋର ହୃଦୟ ସ୍ପଷ୍ଟ କହୁଛି—ନାଁ, ନାଁ, ମୁଁ ସେ ବାଟରେ କଦାପି ଯାଇ ନ ପାରେ । କାରଣ ଏପରି ଅଜ୍ଞାତ ପ୍ରଦେଶର ସନ୍ଧାନୀ ସାହସୀ ଯାତ୍ରୀ କୌଣସି ଜନତାର ପ୍ରତିନିଧିତ୍ୱ କରି ଆସିଥାଏ, ନିଜ ଜ୍ଞାନର ପରିସୀମାକୁ ବିସ୍ତୀର୍ଣ୍ଣ କରିବା ପାଇଁ କିନ୍ତୁ ମୋ ଜନତା ତ ସାମାନ୍ୟ ବୁଝିବାର ଶକ୍ତି ହରାଇ ବସିଛି ।

ପୁନଶ୍ଚ ମୁଁ ଜଣେ ନାରୀକୁ କାହିଁକି ଆଲିଙ୍ଗନ କରୁଛି ଯେ ? କାହିଁକି ତାକୁ ମୋ ଛାତିରେ ଚିପି ଧରୁଛି ? ଆତ୍ମସନ୍ଧାନର ଅନୁଭୂତିକୁ ପୁଣିଥରେ ଦୋହରାଇବାକୁ କିନ୍ତୁ ମୁଁ ମୋ ନିଜକୁ ଖୋଜି ସାରିଛି । ମୁଁ ସୀମାହୀନ ନୁହେଁ । ତଥାପି ମୁଁ ଯେତେବେଳେ ଯୌନ ଅନୁଭୂତି ପୁନରାବୃତ୍ତି କରୁଛି ସେତେବେଳେ କୌଣସି ନୂତନତା ନାହିଁ । ଏଣୁ ଜଣେ ପୁରୁଷ କାହାରିକୁ ଗ୍ରହଣ କଲାବେଳେ କେବଳ ପୂର୍ବାସ୍ୱାଦିତ ଅନୁଭୂତିକୁ ଦୋହରାଇ ଥାଏ ସିନା କୌଣସି ନୂତନ ଅନୁଭୂତିର ସନ୍ଧାନ କରି ନଥାଏ ଏବଂ ଏହା ଆତ୍ମସ୍ଖଳନ ଠାରୁ ଭିନ୍ନ ଅନ୍ୟ କିଛି ନୁହେଁ ।

ଯେତେବେଳେ ଏଭଳି ସ୍ଥିତି ସମୁଦାୟଗତ ହୁଏ ସେତେବେଳେ ପୁରୁଷର ପାରସ୍ପରିକ ଅତି ପ୍ରାକୃତିକ ବ୍ୟଭିଚାରର ପ୍ରଚଳନ ବଢ଼ି ଯାଇଥାଏ । କାରଣ ସ୍ୱ-ସ୍ଖଳନର ଅଧିକ ସମୀପବର୍ତ୍ତୀ ହୋଇଥାଏ ସେ; କିନ୍ତୁ ସଶକ୍ତ ଆତ୍ମା ଯେଉଁ ବ୍ୟକ୍ତିର ସେ ବ୍ୟକ୍ତି ଅନ୍ୟର ଶରୀର ପ୍ରତି ଆଦର ଭାବ ପୋଷଣ କରିଥାଏ । ସେ ବ୍ୟକ୍ତି ପୁରୁଷ ହେଉ ବା ନାରୀ ହେଉ । ଏଣୁ ସେ ଯୌନ କ୍ରିୟାରେ ତଟସ୍ଥ ନିର୍ଲିପ୍ତ ରହେ । ଠିକ୍ ଏହି ଧରଣର ହେଉଛନ୍ତି ଫଷ୍ଟ'ର ।"

କିନ୍ତୁ ଏ ଧରଣର ମାନସିକ ନପୁଂସକତା କେବଳ ଫଷ୍ଟ'ରଙ୍କଠାରେ ଯେ ଦେଖା ଦେଇଥିଲା ତା ନୁହେଁ ସେ ସମୟର ସମଗ୍ର ସଂସ୍କୃତିକୁ ଏହା ପରିବ୍ୟାପ୍ତ ହୋଇଥିଲା । ଏହାର ୧୩ ବର୍ଷ ପରେ ଲରେନସ୍ ତାଙ୍କର ସବୁଠାରୁ ପ୍ରସିଦ୍ଧ

ଉପନ୍ୟାସ 'ଲେଡ଼ି ଚ୍ଚଟର୍ଲିଜ୍ ଲଭର' ଲେଖିଥିଲେ ଯହିଁରେ ଏହାର ନାୟକ ଲର୍ଡ କ୍ଲିଫୋର୍ଡ ଚ୍ଚଟର୍ଲି ଜଣେ ସମ୍ଭ୍ରାନ୍ତ କୁଳସମ୍ଭୂତ କଥାସାହିତ୍ୟିକ ରୂପେ ସଂଯୋଜିତ ଓ ସେ ଫ୍ଲେଣ୍ଡର୍ସକୁ ଯୁଦ୍ଧ କରିବାକୁ ଯାଆନ୍ତି ଏବଂ ଫେରିଲା ବେଳକୁ ଏକ ବୋମା ବିସ୍ଫୋରଣରେ ତାଙ୍କର ଅଣ୍ଟାଠାରୁ ତଳକୁ ଶରୀରର ନିମ୍ନଭାଗ ଅକାମୀ ହୋଇଯାଏ । ସେ ସନ୍ତାନୋତ୍ପତ୍ତି ନିମିତ୍ତ ଏକାବେଳେକେ ଅସମର୍ଥ ହୋଇ ପଡନ୍ତି । ତାଙ୍କର ପତ୍ନୀ ପରମା ସୁନ୍ଦରୀ ଓ ସ୍ୱାମୀକୁ ଖୁବ୍ ଭଲ ପାଉଥିବା ସତ୍ତ୍ୱେ ତାଙ୍କର ମାତୃତ୍ୱ ବୁଭୁକ୍ଷିତ ରହି ଯେଉଁଥିପାଇଁ ସ୍ୱାମୀଙ୍କ ବଗିଚାର ରକ୍ଷଣାବେକ୍ଷଣ କରୁଥିବା ଜଣେ ଶ୍ରମିକ ମେଲର୍ସ ସହ ଅବୈଧ ଯୌନ ସମ୍ପର୍କ ସ୍ଥାପିତ କରନ୍ତି ଓ ସ୍ୱାମୀକୁ ତ୍ୟାଗ କରନ୍ତି ।

ଲରେନ୍ସଙ୍କର ଏହି ଶକ୍ତିଶାଳୀ ଉପନ୍ୟାସର ମୂଳରେ ଗୋଟିଏ ରୂପକ ନିହିତ ଯହିଁରେ କ୍ଲିଫୋର୍ଡ ବୁଦ୍ଧିବାଦୀ ନପୁଂସକ ପୁଞ୍ଜିବାଦୀ ଶ୍ରେଣୀର ପ୍ରତୀକ ଯିଏ ନିଜର ସମସ୍ତ ପୌରୁଷକୁ ହରାଇ ବସିଛି ଓ ଯାହା ନିକଟରେ ସୃଜନର ସାମାନ୍ୟତମ ଶକ୍ତି ବିଲୁପ୍ତ । କୋନୀ ଅର୍ଥାତ୍ ଲେଡ଼ି ଚ୍ଚଟର୍ଲି ସେହି ସାଂସ୍କୃତିକ ପରମ୍ପରାର ପ୍ରତୀକ ଯିଏ ନୂତନ ମାନବ, ନୂତନ ମନୁ-ଯୁଗ ସୃଷ୍ଟି କରିବାକୁ ଚାହେଁ ବୋଲି ସେ ସେହି ଶ୍ରମିକଟି ସହ ସମ୍ବନ୍ଧ ସ୍ଥାପିତ କରେ ଯାହା ପାଖରେ ଏବେ ବି ପୁରୁଷତ୍ୱ ସଞ୍ଚିତ ହୋଇ ରହିଛି ଓ ନିଜର ଉଚ୍ଚଶ୍ରେଣୀର ପୁଞ୍ଜିପତି ବୁଦ୍ଧିବାଦୀ ଗାଳ୍ପିକ ସ୍ୱାମୀସହ ସମସ୍ତ ସମ୍ପର୍କ ତୁଟାଇ ଦେଇଛି । ସମଗ୍ର ଉପନ୍ୟାସଟି ଏକ ରୂପକ ମାତ୍ର ।

କିନ୍ତୁ ଏହି ବିଶ୍ୱଯୁଦ୍ଧରେ ପୁଞ୍ଜିବାଦୀ ନୃଶଂସତାର ଅନ୍ତ ଘଟି ନ ଥିଲା । ପୁନଶ୍ଚ କିଛି ବର୍ଷ ପରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ୟୁରୋପୀୟ ସଂସ୍କୃତି ପୁନର୍ବାର ରକ୍ତସ୍ନାନ କରିବାକୁ ଲାଗିଗଲା । ସକଳ ରାଷ୍ଟ୍ରର ଜନମାନସ ଯୁଦ୍ଧକୈନ୍ଦ୍ରିକ ହୋଇପଡ଼ିଲା । ପ୍ରତ୍ୟେକଙ୍କର ଚିନ୍ତା ଥିଲା ନିଜର ସୁରକ୍ଷା ଓ ବିଜୟଲାଭ କରିବା । ଯୁଦ୍ଧ ଯୁଦ୍ଧକ୍ଷେତ୍ରକୁ ତ୍ୟାଗ କଲା । ବୋମା ବିସ୍ଫୋରଣରେ ବେସାମରିକ ନଗରବାସୀ ମୃତ୍ୟୁ ମୁଖରେ ପଡ଼ିଲେ । ବୋମା ଦ୍ୱାରା ବିନାଶରୁ ବ୍ୟକ୍ତିକୁ ରକ୍ଷା କରିବା ପାଇଁ ଈଶ୍ୱର ନିଷ୍କ୍ରିୟ ପ୍ରମାଣିତ ହେଲେ, ଫଳରେ ଈଶ୍ୱରଙ୍କ ଉପରୁ ଆସ୍ଥା ଲୋପ ହେବା ସ୍ୱାଭାବିକ ହୋଇ ପଡ଼ିଲା । ନୈତିକ ପତନ ମଧ୍ୟ ଦେଖା ଦେଇଥିଲା ।

ଡାରଉଇନ୍, ଫ୍ରଏଡ୍, ମାର୍କସ୍ ଓ ସାର୍ତ୍ତ ଆଦି ବିପ୍ଳବ ଚିନ୍ତାନାୟକମାନେ ଜନଗଣକୁ ଉଦ୍‌ବୁଦ୍ଧ କରାଇ ନୂଆ ନୂଆ ଆନ୍ଦୋଳନର ବୀଜ ବପନ କଲେ । ଅନ୍ୟ

ପକ୍ଷରେ ଯୁଦ୍ଧ ଫେରନ୍ତା କ୍ଷତ ବିକ୍ଷତ ସୈନିକ ଏବଂ ନୈତିକ ଦୃଷ୍ଟିରୁ ପତିତ ନାରୀମାନଙ୍କଠାରେ ଅସାଧାରଣତା ଲକ୍ଷ୍ୟ କରାଗଲା । ଉଚ୍ଚାକାଙ୍କ୍ଷୀ ଓ ଅତ୍ୟଧିକ ସମ୍ବେଦନଶୀଳ ବ୍ୟକ୍ତିମାନଙ୍କ ଠାରେ ବିକ୍ଷିପ୍ତତା, ବିଭ୍ରମ, ସ୍ନାୟୁ ଦୌର୍ବଲ୍ୟ ଆଦି ମାନସିକ ରୋଗ ଦେଖାଦେବା ଅତି ସାଧାରଣ ହୋଇ ପଡ଼ିଲା । ଯୁଦ୍ଧୋତ୍ତର ୟୁରୋପରେ ୫୦,୦୦,୦୦୦ ବିଧବା ଜୀବିତ ଥିଲେ । ମୃତ୍ୟୁର ଭୟ ଏବଂ ନିଜ ଅସ୍ତିତ୍ୱ ରକ୍ଷା କରିବାର ପ୍ରଶ୍ନରେ ସେମାନଙ୍କର ଚିତ୍ତ ବିପର୍ଯ୍ୟସ୍ତ ହୋଇଥିଲା । ଶରୀର ଭୋଗ ମୁଖ୍ୟ ସମସ୍ୟାରୂପେ ଦେଖା ଦେଲା ।

ନୈତିକତାର ପତନ ଓ କ୍ଷଣବାଦୀ ସୁଖର କାମନା ଏତେ ବିକଟରୂପ ଧାରଣ କଲା ଯେ ନାରୀକୁ ପ୍ରକୃତ ରୂପରେ ଦେଖିବାର ତଥା ପଶୁସୁଲଭ ସେକ୍ସ ସୁବିଧା ସୁଯୋଗର ଚାହିଦା ଦିନକୁଦିନ ବଢ଼ି ଚାଲିଲା । ଆସ୍ଥାର ଆଧାର ପରିବର୍ତ୍ତିତ ହୁଅନ୍ତେ ସମାଜ ବିକୃତରୂପ ଧାରଣ କଲା । ବୋମାର ବିନାଶରୁ ମାନବକୁ ରକ୍ଷା କରିବାକୁ ଅସମର୍ଥ ଈଶ୍ୱରଙ୍କୁ ମୃତ ବୋଲି ସ୍ଲୋଗାନ ( ନିତ୍ସେ ) ଦିଆଗଲା । ଜୀବନର ଆତଙ୍କଗ୍ରସ୍ତ ଆଶଙ୍କା ପରିବେଷ୍ଟିତ ସ୍ଥିତି ଏବଂ ନିଜର ଦୌର୍ବଲ୍ୟ ଓ ନୈରାଶ୍ୟର ଅନୁଭୂତି ଯୁଦ୍ଧୋତ୍ତର ସମାଜରେ ବାସ କରୁଥିବା ନୈରାଶ୍ୟ ପ୍ରପୀଡ଼ିତ ଜନତାକୁ ଅସ୍ତିତ୍ୱବାଦର ନୂତନ ଚିନ୍ତାଧାରା ଆକୃଷ୍ଟ କଲା ।

ଅସ୍ତିତ୍ୱବାଦ ନୂତନତା ପାଇଁ ଆକର୍ଷଣୀୟ ନ ଥିଲା ଏହା ଆକର୍ଷଣୀୟ ଥିଲା ଏଇଥିପାଇଁ ଯେ ଯେତେବେଳେ ବ୍ୟକ୍ତିର ସ୍ଥିତି ଏକାନ୍ତ ଭାବରେ ବିପନ୍ନ ସେତେବେଳେ ନିଜର ଅସ୍ତିତ୍ୱ ରକ୍ଷା ଥିଲା ବିରାଟ ସମସ୍ୟା । ପାରମ୍ପରିକ ମୂଲ୍ୟ-ବୋଧ ପରିବର୍ତ୍ତିତ ହେଲାବେଳେ ମାନବିକ ଗରିମାମୟ ମୂଲ୍ୟବୋଧର ଶକ୍ତିଶାଳୀ ପ୍ରତିଷ୍ଠା ନିମିତ୍ତ ଏହା ଥିଲା ଏକ ସାହିତ୍ୟିକ ପ୍ରଚେଷ୍ଟା ଓ କର୍ମଣ୍ୟବୌଦ୍ଧିକ ଆନ୍ଦୋଳନ । ସାର୍ତ୍ରେ କହିଥିଲେ ଯେ ସାମୟିକ ଜୀବନ ଦୂଷିତ ଏବଂ ଉପଯୋଗିତା ରହିତ ଅନୁର୍ବର ପଙ୍କର ରିଜର୍ଭୟୁର ।

ଗୋଟିଏ ବଡ଼ କଥା ଏହି ଯେ ପରମ୍ପରା ବିରୋଧୀ ହେବା ସଙ୍ଗେ ସଙ୍ଗେ ବ୍ୟକ୍ତି ଅନୁରୂପ ସଂରକ୍ଷଣଶୀଳ ହୋଇ ପଡ଼ୁଛି ବା ଭିନ୍ନ ଭାଷାରେ କହିଲେ ବ୍ୟକ୍ତିଗତ ସ୍ୱାର୍ଥହାନୀ ପ୍ରତି ସେ ଏତେଦୂର ଉଦ୍‌ବୁଦ୍ଧ ହୋଇ ପଡ଼ୁଛି ଯେ ଅଭ୍ୟସ୍ତ ପ୍ରଚଳିତ ଶଗଡ଼ ଗୁଳା ଛାଡ଼ି ଅନ୍ୟତ୍ର କାହିଁ ଯିବା ପାଇଁ ତା'ର ଇଚ୍ଛା ନାହିଁ । ତାର

ଅନ୍ତରାତ୍ମା ବ୍ୟକ୍ତିଗତ ଅସ୍ତିତ୍ୱ ଲାଭ ପ୍ରତି ଅତିଶୟ ସଚେତନ । କାମୂ୍ୟଙ୍କର 'ପ୍ଲେଗ୍'ର ଓରାନ୍ ସହରର ପ୍ରତ୍ୟେକ ଲୋକ × × × "Devotes himself to cultivation habits" ପରି ବା ମନୋଜ ଦାସଙ୍କ 'ଭୂତୁଣୀ-ଏକ ବିଦାୟ'ରେ ପିଲାମାନଙ୍କର ଖେଳ କଳ୍ପିତ ଭୂତୁଣୀର ସାହଚର୍ଯ୍ୟ ବିନା ନ ଜମିଲା ପରି ବ୍ୟକ୍ତିର ସ୍ଥିତି ହୁଏ ରୁଟିନବନ୍ଧା ସ୍ଥିତି । ଏଣୁ ଗାଁରେ ସ୍ୱେଚ୍ଛାସ୍ରୋତ ହେଲେ ଭୂତୁଣୀକୁ ତା' ଘରୁ ହଟାଇଦେବାରେ ମୋଟେ ଡେରି କରାଯାଏ ନାହିଁ ।

ଏ ପ୍ରକାର ସ୍ଥିତି ଏକାନ୍ତ ଭାବରେ ମାନସିକ । କାରଣ ଆଜିର ଜୀବନ ବହୁ ସଂଘର୍ଷ ମଧ୍ୟ ଦେଇ ଗତି କରୁଛି । କାହାକୁ ଭଲ ବା ମନ୍ଦ ବୋଲି ଗ୍ରହଣ କରାଯିବ ତାହା ଏକ ବିରାଟ ସମସ୍ୟା । କିଏ ଶୁଭଙ୍କର କିଏ ଅହିତକର ଜାଣିବା ଦୁରୂହ । କିଏ ସାଧୁ କିଏ ଅସାଧୁ ଚିହ୍ନିବା କଷ୍ଟକର । ସାଧୁ ପରମୁହୂର୍ତ୍ତରେ ଅସାଧୁ ବା ଅସାଧୁ ଭିନ୍ନ କ୍ଷେତ୍ରରେ ସାଧୁରୂପେ ଦେଖା ଦେଉଛି । ହାତ ପାଆନ୍ତ ବଙ୍ଗଳାର ବିମଲ ମିତ୍ରଙ୍କର 'କଲିକତା ଥେକେ ବଲ୍‌ଛି" ବହିର ଗଳ୍ପଟି ମନେପଡ଼ୁଛି । ଯେଉଁ ବ୍ୟକ୍ତିକୁ ବିଶିଷ୍ଟ ଲେଖକ ହିସାବରେ ବିଦ୍ୟାଳୟରେ ସମସ୍ତେ ସମ୍ମାନ ପ୍ରଦର୍ଶନ କରୁଛନ୍ତି ସେହି ବ୍ୟକ୍ତି ଇନ୍‌କମ ଟ୍ୟାକ୍‌ସ ଅଫିସରଙ୍କ କୋଠରୀ ବାହାରେ ପିଅନ ବସିବା ପାଇଁ ପଡ଼ିଥିବା ବେଞ୍ଚଟି ଉପରେ ଜାକିଜୁକି ହୋଇ ଅସହାୟ ଅବାଞ୍ଛିତ ଓ ଅପାଙ୍‌କ୍ତେୟ ଭାବରେ ବସି ରହିଛି । ସ୍କୁଲରେ ଉକ୍ତ ବ୍ୟକ୍ତିଙ୍କୁ ସମ୍ମାନ ଦେଖାଇ ବରଣୀୟ ମାନନୀୟ ବନ୍ଦନୀୟ ଦେବତାରୂପେ ଗ୍ରହଣ କରି ଆସିଥିବା ଛାତ୍ର ନିଜ ବାପାଙ୍କ କୋଠରୀ ଆଗରେ ହେୟ ଭାବରେ ବସିଥିବାର ଦେଖି ଯେତେବେଳେ ପ୍ରଧାନଶିକ୍ଷକଙ୍କୁ ଏ ରହସ୍ୟ ପଚାରୁଛି ସେତେବେଳେ ହୁଏତ ପ୍ରଧାନଶିକ୍ଷକ ଏହାକୁ 'ଜୀବନ-ଜିଜ୍ଞାସା' ବୋଲି କହିବେନି ତ ଆଉ କ'ଣ କହିବେ ?

ନରପତି ଜାନୁଶ୍ରୁତିଙ୍କ ପରି ତେଲେଙ୍ଗାନା ପ୍ରଥମ ବିଶ୍ୱବିଦ୍ୟାଳୟ ଅର୍ଥନୀତି ବିଭାଗର ମୁଖ୍ୟ ଅଧ୍ୟାପକ ବିମାନବିହାରୀ ଓ ବିଶ୍ୱବିଦ୍ୟାଳୟ ସୌଧ ଆର ପାରିରେ ଥିବା ପ୍ରାଚୀନ ସହରର ଗୁଲୁଗୁଲା ବିକାଳି—ଉଭୟ ସମାନ ମହିମାରେ ମହିମାବନ୍ତ । ଏପରିକି ଦେଶ ଶାସନରେ ଯେଉଁ ବିମାନ ବିହାରୀ ମୁଖ୍ୟମନ୍ତ୍ରୀଙ୍କୁ ପରାମର୍ଶ ଦିଅନ୍ତି ସେହି ବିମାନ ବିହାରୀଙ୍କ ସହ ପୂର୍ବ ନିର୍ଦ୍ଧାରିତ ଏନ୍‌ଗେଜ୍‌ମେଣ୍ଟକୁ ବାତିଲ କରି ମୁଖ୍ୟମନ୍ତ୍ରୀ ବିତ୍ତ ମନ୍ତ୍ରୀଙ୍କ ଗହଣରେ ଉକ୍ତ ଗୁଲୁଗୁଲା ବିକାଳିଙ୍କଠାରୁ ପରାମର୍ଶ ନେବାପାଇଁ ଯାଆନ୍ତି । ( ଶାନ୍ତନୁ କୁମାର ଆଚାର୍ଯ୍ୟ; ଗୁଲୁଗୁଲା ) । ତଥିଲେଖି

କିଏ ଲେଖୁଛି ॥

ଦେଉଥିବା ବ୍ୟକ୍ତି ଜଣକ ଗାର୍ଥପ୍ରାର୍ଥୀ ଦଳର ଦଳପତିଙ୍କୁ ଲାଲବାହାଦୁର ଶାସ୍ତ୍ରୀ ବୋଲି ଭାବି ବସେ । ( ଶା. କୁ. ଆଚାର୍ଯ୍ୟ, ଚଠି ଲେଖାଳି )

ଯୁଗର ଭିତରେ ବ୍ୟକ୍ତି ନିଷ୍କ୍ରିୟ ହୁଏ । କର୍ମକୁଣ୍ଠ ହୋଇ ବାକ୍ୟବୀର, ଆଲୋଚନା ବୀର ହୁଏ । ଅବସରପ୍ରାପ୍ତ ପ୍ରିନ୍‌ସିପାଲ ମିଶ୍ରବାବୁ ଗୁରୁବାର ଦିନ ହାଇସ୍କୁଲ ଆଡ଼େ ଯାଇ ପ୍ରଧାନଶିକ୍ଷକ ଓ ଟେଗେର ଆଉ କେତେଜଣଙ୍କୁ ଘରକୁ ନିମନ୍ତ୍ରଣ କରି ଆସନ୍ତି । କହନ୍ତି "ଆମେ ଶିକ୍ଷକମାନେ ଦିନେ ଏକାଠି ହୁଅନ୍ତେ ନାହିଁ । ଏସବୁ ଯୋଉ ଦୁର୍ଘଟଣା ଘଟୁଚି ଆମେ ଶୁଣୁଚେ ମଝିରେ ମଝିରେ ସେ ବିଷୟରେ ଆଲୋଚନା ଟିକିଏ ଟିକିଏ କଲେ କେମିତି ହୁଅନ୍ତା ?" ମିଶ୍ରବାବୁ, ଯେଉଁ ଯୁଗର ଲୋକ ସେ ଯୁଗରେ ସବୁ କେବଳ "ନାହିଁ", "ନାହିଁ" । ନିଜ ପାଇଁ ପାନ ଆଣିବାର ସାମର୍ଥ୍ୟ ନିଜର ନାହିଁ । ନିଜପାଇଁ ଖାଦ୍ୟ ସଂଗ୍ରହ କରିବାର ଶକ୍ତି ନିଜର ନାହିଁ । ଅଥଚ ମିଶ୍ରବାବୁଙ୍କ ବାପା, ସେ କାଳର ପ୍ରାଥମିକ ଶିକ୍ଷକ, ଅଶୀବର୍ଷର ବୁଢ଼ାଙ୍କ ପକ୍ଷରେ 'ଅଛି, ଅଛି' ଉତ୍ତର । ଖାଦ୍ୟ ଅଛି, ବସ୍ତ୍ର ଅଛି, ସମସ୍ୟା ଅଛି ଓ ସମସ୍ୟାକୁ ଦୂର କରି ସମାଧାନ ଆଣିବାର ତାକତ୍ ମଧ୍ୟ ଅଛି । (ଶାଃ କୁଃ ଆଚାର୍ଯ୍ୟ, ଶେଷ ଉତ୍ତର) ।

ଏହି ନିଷ୍କ୍ରିୟତା ହିଁ ଅସଲ ସମସ୍ୟା । ଆଜିର ସାହିତ୍ୟ ଏହି ନିଷ୍କ୍ରିୟତାକୁ ଲୋପ କରିବାକୁ ଚେଷ୍ଟିତ ହେବା ଉଚିତ । ପ୍ରକୃତ ସଙ୍କଟ ପ୍ରତି ଜନଗଣଙ୍କୁ ସଚେତନ କରାଇ ସମାଧାନର ଦିଗ୍‌ଦର୍ଶନ ଦେବା ଦରକାର । ଏହା ହିଁ ସାହିତ୍ୟ ଓ ସାହିତ୍ୟିକର ସାମାଜିକ ଦାୟିତ୍ୱବୋଧ । ସାହିତ୍ୟ ପ୍ରେରଣା ଦେବ କର୍ମ କରିବାକୁ, ସକ୍ରିୟ ହେବାକୁ ଓ ସୁସ୍ଥ ସୁନ୍ଦର ସମୁନ୍ନତ ସମାଜ ଗଠନ କରିବାକୁ । ପାଶ୍ଚାତ୍ୟ ପୁଞ୍ଜିବାଦୀ ସମାଜର ନିଷ୍କ୍ରିୟତା ବଦଳରେ ସକ୍ରିୟତା ଆମର ଆବଶ୍ୟକ । କିନ୍ତୁ ଓଡ଼ିଆ ଗଳ୍ପ ସାହିତ୍ୟର ନିଷ୍କ୍ରିୟ ଚରିତ୍ରଗୁଡ଼ିକର ବାହୁଲ୍ୟ ଶୁଭସୂଚକ ନୁହେଁ ।



'ଅଧୁନା' ୨ୟ ବର୍ଷ, ୯ମ ସଂଖ୍ୟା
ଫେବୃଆରୀ, ୧୯୭୪
୨ୟ ବର୍ଷ, ୧୧ଶ ସଂଖ୍ୟା
ଏପ୍ରିଲ-ମେ, ୧୯୭୪
୩ୟ ବର୍ଷ, ୨ୟ ସଂଖ୍ୟା
ସେପ୍‌ଟେମ୍ବର, ୧୯୭୪

# ଓଡ଼ିଆ ପତ୍ରିକାର ସମସ୍ୟା—

ସମସ୍ତେ ସଚେତନ ହେଲେ ହେଁ ଓଡ଼ିଆ ପତ୍ରିକା ଜଗତ ଦିନକୁ ଦିନ ମାନ୍ଦା ହୋଇ ଚାଲିଛି । ଏବେ ଏବେ କେତେକ ପତ୍ରିକା ବନ୍ଦ ହୋଇଗଲାଣି । କେତେକର ବିକ୍ରୀ କମିଗଲାଣି । କେତେକର ଲୋକପ୍ରିୟତା କମି କମି ଗଲାଣି । ଗଲା କିଛି ଦିନ ତଳେ କଥାବାର୍ତ୍ତା ପ୍ରସଙ୍ଗରେ ଜଣେ ବନ୍ଧୁ କହିଲେ ଓଡ଼ିଆ ପତ୍ରିକାର ଷ୍ଟାଣ୍ଡାର୍ଡ ନାହିଁ । ତାର କାରଣ ସେ ସାହିତ୍ୟ ପତ୍ରିକା ଚାହୁଁ ନାହାନ୍ତି । ଚିତ୍ର-ବିଚିତ୍ର ହୋଇ ସମ୍ବାଦଧର୍ମୀ ପତ୍ରିକା ତାଙ୍କର କାମ୍ୟ । ଚିତ୍ର-ବିଚିତ୍ର ହୋଇ ରଙ୍ଗୀନ ପତ୍ରିକା ବାହାର କରିବା ପାଇଁ ଯେଉଁ ପ୍ରେସ ଦରକାର ସେ ପ୍ରେସର ବ୍ୟବହାର ପାଇଁ କୌଣସି ଓଡ଼ିଆ ପତ୍ରିକା ପ୍ରତିଷ୍ଠାନ ସମର୍ଥ ନୁହନ୍ତି । ଆମଭଳି ଓଡ଼ିଆ ପତ୍ରିକାକୁ ବିଜ୍ଞାପନ ମିଳେନି, ମିଳିଲେ ଗ୍ରାପୁ; ମାତ୍ର ପରେ ପଇସା ପାଉନା । ଏଜେଣ୍ଟମାନେ ଯେତିକି ବିକନ୍ତି ସେତିକିରେ ପଇସା ଦିଅନ୍ତି ନାହିଁ । ଏଭଳି ଅବସ୍ଥାରେ କ'ଣ କରାଯାଇ ପାରିବ ତାହାହିଁ ବିବେଚ୍ୟ ।

ସମ୍ପାଦକୀୟ ନୀତି ବଦଳରେ 'ଅଧୁନା' ଏକ ଅଗ୍ରଣୀ ପତ୍ରିକା କାରଣ ଏହା ଓଡ଼ିଶା ଏକମାତ୍ର ପତ୍ରିକା ଯାହାର ସମ୍ପାଦନା ନୀତି ବହୁ ସଂଖ୍ୟକ ପାଠକଙ୍କ ସହ ପ୍ରତ୍ୟକ୍ଷ ଆଲୋଚନା କରି ସ୍ଥିର କରାଯାଇଥାଏ । ଏଣୁ ପତ୍ରିକା ଜଗତର ସମସ୍ୟାକୁ ଲକ୍ଷ୍ୟ କରି ଆମେ ଅଧୁନାର ସମ୍ପାଦନା ନୀତିରେ ବ୍ୟାପକ ପରିବର୍ତ୍ତନ କରି ଏହି ସଂଖ୍ୟାଟି ପ୍ରକାଶ କରୁଛୁ । ଆଶା ପାଠକମାନେ ଗ୍ରହଣ କରି ବାଧିତ କରିବା ହେବେ ।

ଓଡ଼ିଆ ପତ୍ର ପତ୍ରିକା ପ୍ରକାଶନରେ ସମ୍ଭବତଃ ଶତାବ୍ଦୀବର୍ଷ ପୂର୍ଣ୍ଣ ହୋଇଥିଲେ ମଧ୍ୟ ତାହା ଏବେ ସୁଦ୍ଧା ଯଥେଷ୍ଟ ଜନପ୍ରିୟତା ହାସଲ କରିପାରିନାହିଁ ।

ଓଡ଼ିଆ ପତ୍ର ପତ୍ରିକାର ଆଦର ଓ ଜନପ୍ରିୟତା ଅଭିବୃଦ୍ଧି ପଥରେ କ'ଣ ସବୁ ଅନ୍ତରାୟ ରହିଛି ? ଶତାବ୍ଦୀବର୍ଷ ତଳେ ଓଡ଼ିଶାରେ ସାକ୍ଷର ସଂଖ୍ୟା ଯାହା ଥିଲା, ତାହା ଆଜି ବହୁ ଅଗଣିତ ହୋଇଛି । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇଛି । ଗୋଟିଏ ବିଶ୍ୱବିଦ୍ୟାଳୟ ପରିବର୍ତ୍ତେ ଚାରିଗୋଟି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇଛି । ଅସଂଖ୍ୟ ମହାବିଦ୍ୟାଳୟ ଓ ବିଦ୍ୟାଳୟ ଓଡ଼ିଶାର କୋଣ ଅନୁକୋଣରେ ମୁଣ୍ଡ ଟେକିଛି । ଶିକ୍ଷାର ଏ ସମସ୍ତ ସମ୍ପ୍ରସାରଣ ସତ୍ତ୍ୱେ ଓଡ଼ିଆ ପତ୍ର ପତ୍ରିକା ଅନାଦୃତ ହେଉଥିବା ଏକାନ୍ତ ଦୁର୍ଭାଗ୍ୟଜନକ ଘଟଣା ।

ପତ୍ର ପତ୍ରିକା କିମ୍ବା ସମ୍ବାଦପତ୍ରଟିଏ କିଣିବା ପାଇଁ ଯେଉଁ ଆବଶ୍ୟକୀୟ ଅର୍ଥ ଦରକାର, ତାହା କ'ଣ ଓଡ଼ିଶାର ଜନସାଧାରଣଙ୍କ ନିକଟରେ ନାହିଁ ? ପୂଜାପାର୍ବଣରେ, ଭୋଜି ଭାତରେ; ଯାନିଯୌତୁକରେ ଓଡ଼ିଶାର ଜନସାଧାରଣ କିପରି ଅକାତର ଭାବରେ ଖର୍ଚ୍ଚ କରିଚାଲନ୍ତି, ତାହା ସମସ୍ତେ ଜାଣନ୍ତି । ମାତ୍ର ଆମର ବଡ଼ ଅନ୍ତରାୟ ହେଉଛି ଆମର ମନୋବୃତ୍ତି । ଆମ ମନୋବୃତ୍ତି ଓ ମନସ୍ତତ୍ତ୍ୱର ଏଯାବତ୍ ବିଶୁଦ୍ଧୀକରଣ ହେଲା ନାହିଁ । ଆମ ସାହିତ୍ୟ, ସଂସ୍କୃତି ଓ ଆମର ଜାତୀୟତା ପ୍ରତି ଆମର ଶ୍ରଦ୍ଧା ଜାଗ୍ରତ ହେଲାନାହିଁ । ଓଡ଼ିଆ ପୁସ୍ତକ, ପତ୍ର ପତ୍ରିକା ପଢ଼ିବା ଲାଗି ଆମର ଏକ ଉଦଗ୍ର ଆକାଙ୍କ୍ଷା ପ୍ରକଟିତ ହେଲାନାହିଁ ।

ଆଜି ଭାରତବର୍ଷରେ ପ୍ରାନ୍ତୀୟ ଭାଷା ଓ ସାହିତ୍ୟର ଅଗ୍ରଗତି ପାଇଁ ପ୍ରଚଣ୍ଡ ପ୍ରତିଯୋଗିତା ଚାଲିଥିବାବେଳେ ଆମର ଏଇ ଦୈନ୍ୟ, ମନୋବୈକଲ୍ୟ ନିସ୍ପୃହ ଓ ଶ୍ରଦ୍ଧାହୀନ ମନୋବୃତ୍ତି ନେଇ କିପରି ଯେ ଆମେ ଭାରତୀୟ ଦରବାରରେ ପ୍ରତିଷ୍ଠିତ ହେବା, ତାହାହିଁ ଆମକୁ ଗଭୀର ଆଶଙ୍କାରେ ଆଶଙ୍କିତ କରୁଛି । ଏ ଦିଗରେ ଉପଯୁକ୍ତ ପଦକ୍ଷେପ ଗ୍ରହଣ କରିବା ପାଇଁ ଓଡ଼ିଶା ସରକାର, ବୁଦ୍ଧିଜୀବୀ, ଶିକ୍ଷିତ ଓ ଓଡ଼ିଆ ନାଗରିକମାନଙ୍କ ଦୃଷ୍ଟି ଆକର୍ଷଣ କରୁଛୁଁ ।

୧୯୭୩ ମସିହା ପର୍ଯ୍ୟନ୍ତ ଆମେ ପତ୍ରିକା ପ୍ରକାଶନ ସମ୍ପର୍କରେ ଖିଅମତ ଲେଖୁଥିଲୁ । ତା'ପରେ ପାଞ୍ଚବର୍ଷ କାଳ ଆମେ ମୋଟେ କିଛି କହିନାହୁଁ । କାରଣ ପତ୍ରିକାର ପ୍ରତିଟି ପୃଷ୍ଠା ଆମ କଥା ପ୍ରକାଶ କରିଥିଲା । ପାଞ୍ଚବର୍ଷ ପରେ କେତେ

କ'ଣ ପରିବର୍ତ୍ତନ ଘଟିଛି । ନଈକେ ବାଙ୍କ ପରି କାଳକେ ଫାଙ୍କ ଦେଖା ଦେଇଛି । 'ଅଧୁନ'ାର ସମ୍ପାଦନା ମଧ୍ୟରେ ବହୁ ପରିବର୍ତ୍ତନ ସମ୍ଭବ ହୋଇଛି । ଏଣୁ ଏବେ ପତ୍ରିକା ପ୍ରକାଶନ ସମ୍ପର୍କରେ କିଛି କହିବା ଉପଯୁକ୍ତ ମନେ କରୁଛି ।

ପତ୍ରିକା ପ୍ରକାଶନର ଆଗ୍ରହ ଅତୀବ ଦୁର୍ନିବାର । ଏହି ଦୁର୍ଦ୍ଦମମୟ ଆବେଗ ତାଡ଼ିତ ବହୁ ପତ୍ରିକା ପ୍ରକାଶିତ ହୋଇଛି । ଫଳରେ ଆଜି ପ୍ରକାଶ ପାଉଥିବା ବିଭିନ୍ନ ପତ୍ରିକା ପ୍ରକାଶନକୁ କ୍ଷୁଦ୍ର ପତ୍ରିକା ଓ ବୃହତ୍ ପତ୍ରିକା ପ୍ରକାଶନ ଉଦ୍ୟୋଗ ଆଦି ଦ୍ୱିବିଧ ଶ୍ରେଣୀରେ ଭାଗ କରାଯାଇପାରେ । ଓଡ଼ିଶାରେ ପ୍ରତ୍ୟେକ ପତ୍ରିକା କ୍ଷୁଦ୍ର ଉଦ୍ୟୋଗ ଶ୍ରେଣୀର । ହିନ୍ଦୀ ଆଦି କେତେକ ଭାଷାରେ କ୍ଷୁଦ୍ର ଉଦ୍ୟୋଗ ଓ ବୃହତ୍ ଉଦ୍ୟୋଗ ସମୂହ ମଧ୍ୟରେ ତୀବ୍ର ପ୍ରତିଦ୍ୱନ୍ଦ୍ୱିତା ଚାଲିଛି । ଆମର ଏଠି ସେ ସମସ୍ୟା ନାହିଁ ।

ହିନ୍ଦୀ କ୍ଷୁଦ୍ର ପତ୍ରିକା ପ୍ରକାଶନ ସମ୍ପର୍କରେ ଏକ ପ୍ରତିଷ୍ଠିତ ବୃହତ୍ ପତ୍ରିକାରେ ପ୍ରକାଶିତ ଏକ ଲେଖା ପଢିଥିଲି । ତାହା ଏକ ବ୍ୟଙ୍ଗାତ୍ମକ ରଚନା । ଲଘୁ ପତ୍ରିକା ପ୍ରକାଶନ ରୂପକ ଭଗୀରଥ ନାମ ପ୍ରୟାସର ସଂକୀର୍ଣ୍ଣ ଦ୍ୱାର ଦେଇ ସାହିତ୍ୟ ହସ୍ତୀକୁ ପ୍ରବେଶ କରାଇବାରେ ସମ୍ପାଦକ ପ୍ରବିଷ୍ଟମନା ଥିଲେ । ଏହି ସମୟରେ ଏହି ସମ୍ପାଦକ ନାମଧେୟ ରହସ୍ୟମୟ ପ୍ରତିଭାର ସମ୍ୟକ୍ ପରିଚୟ ପାଇବା ନିମିତ୍ତ ଜନୈକ ଲେଖକ କରବଦ୍ଧ ମୁଦ୍ରାରେ ଉପସ୍ଥିତ ହେଲେ । ଘର ଭିତରେ ସାହିତ୍ୟର ଉଠା-ପଟ୍କା ଚାଲିଥିଲା । ଗୋଟିଏ ଦଉଡ଼ିଆ ଖଟିଆ ଉପରେ ସବ ତବ ସବ୍ଜବ ଲେଖସବୁ ପଡ଼ିଥିଲେ । ଲୁଙ୍ଗିବସନା ସମ୍ପାଦକଙ୍କୁ ସେହିଠାରେ ଲେଖକ ଭେଟିଲେ । ସମ୍ପାଦକ ଲେଖକଙ୍କ ଲେଖା ଛାପିବା ନିମିତ୍ତ କହିଲେ, "ପନ୍ଦର ଟଙ୍କା ଚାନ୍ଦା, ଦଶଟଙ୍କା ବ୍ଲକ ପାଇଁ, ତୁମକୁ ଛାପିଦେବ, ମାତ୍ର ଚଉଦ ଟଙ୍କାରେ ତୁମକୁ ହିନ୍ଦୀ ସାହିତ୍ୟ ନିଜ କୋଳକୁ ନେଇଯିବ ।"

ପରେ ସମ୍ପାଦକଙ୍କ ସାଙ୍ଗରେ ଲେଖକ ବହୁ ସମୟ କଥାବାର୍ତ୍ତା କରନ୍ତି । ସମ୍ପାଦକ ଅନ୍ୟାନ୍ୟ ବଡ଼ ପତ୍ରିକା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରନ୍ତି । "ବଡ଼ ବଡ଼ ପତ୍ରିକା ସବୁ ତେଲ, ସାବୁନ, ହେଆର ରିମୁଭର, କ୍ରିମ, ବ୍ରେସିଆର ଫର୍ଣ୍ଣିଚର, ସୁଟିଙ୍ଗର ବିଜ୍ଞାପନ ପ୍ରକାଶ କରି ସାଧାରଣ ବ୍ୟକ୍ତି ଓ ସାହିତ୍ୟ ଉଭୟଙ୍କୁ ଭୂଆଁ ବୁଲେଉଛନ୍ତି ।" ଅର୍ଥାତ୍ ବଡ଼ ପତ୍ରିକାରେ ବିଜ୍ଞାପନ ବେଶୀ, ରଙ୍ଗ ବେରଙ୍ଗ ବୋଲି ଲୋକେ ଅତି ଆଦରରେ କିଣୁଛନ୍ତି । ଛୋଟ ପତ୍ରିକାଗୁଡ଼ିକର ଏହି ଦ୍ୱିବିଧ ସୁବିଧା ନାହିଁ ।

ଓଡ଼ିଆ ପତ୍ରିକା ପ୍ରକାଶନରେ ମଧ୍ୟ ସେହିକଥା । ବିଜ୍ଞାପନ ନାହିଁ, ରଙ୍ଗୀନ ନୁହେଁ । ଏଣୁ ଓଡ଼ିଆ ପାଠକ ଓଡ଼ିଆ ପତ୍ରିକା କିଣିବାକୁ ଚାହୁଁ ନାହାଁନ୍ତି । ଅବଶ୍ୟ ଆମେ ସମ୍ପାଦକମାନେ ନିଜ ଦୋଷକୁ ନ ଦେଖି ପାଠକଙ୍କ ଦୋଷ ଦେଖିବାରେ ବ୍ୟସ୍ତ । ଅତି ପୁରୁଣା କଥା, ଅରସିକ ବ୍ୟକ୍ତିଙ୍କୁ ରସ ନିବେଦନ କରିବା ମୋ କପାଳରେ ଲେଖାନାହିଁ ହେ ପ୍ରଭୁ ! ଆମେ ସମ୍ପାଦନା କରୁଛୁ ସାହିତ୍ୟ ପତ୍ରିକା । ଲୋକେ ଆଜିକାଲି ବେଶୀ ଖବର ଓ ଜ୍ଞାନ ବିଜ୍ଞାନ ଜାଣିବା ପାଇଁ ଚାହୁଁଛନ୍ତି । ଅବଶ୍ୟ ସେଦିନ ଗଳ୍ପ ପୂଜା ବିଶେଷାଙ୍କ 'ଅଧୁନା'କୁ ଦେଖି ଜଣେ ବ୍ୟକ୍ତି କହିଲେ "ଗଳ୍ପ ପତ୍ରିକାରେ ଅନ୍ୟାନ୍ୟ ଖବର କାହିଁ ଦେଉଛନ୍ତି ?" କିନ୍ତୁ ଏହି ବିଭିନ୍ନ ଖବର ଲୋକେ ଚାହାଁନ୍ତି । ଆମ ଓଡ଼ିଶାରେ "ଆଲୋକ" ଓ "ପୌରୁଷ"କୁ ଛାଡ଼ିଲେ ଏପରି ପତ୍ରିକା ନାହିଁ ।

ଅବଶ୍ୟ ସେଭଳି ପତ୍ରିକାଟିଏ ବାହାର କଲେ ଲୋକେ ନେବେ କି ନାହିଁ ସନ୍ଦେହ । କାରଣ ଅତୀତର ଅଭିଜ୍ଞତାରୁ ଜଣାପଡ଼େ "ବିବରଣୀ" ବନ୍ଦ ହୋଇଗଲା । ସେହିଭଳି ଏକ ପତ୍ରିକା ପ୍ରକାଶ କଲେ ଓଡ଼ିଆ ପାଠକେ ହୁଏତ ନାକ ଟେକିବେ, "ହଁଅ ଇଂରାଜୀ ହିନ୍ଦୀ ବା ବଙ୍ଗଳା ପତ୍ରିକାରୁ ଟିପିଛନ୍ତି ।" ଯଦିଓ ସେମାନେ ବିଲ୍‌କୁଲ୍ ସେତିକି ଖବର ଜାଣି ନ ଥିବେ । ଏହା ଆମ ପାଠକଙ୍କର ଏକ ରୋଗ । "ଷ୍ଟାଣ୍ଡାର୍ଡ ନାହିଁ" କହିବା ପରି ଏହା ଏକ ଅହେତୁକ ଅବସ୍ଥା ।

ବହୁ ପାଠକ ଷ୍ଟାଣ୍ଡାର୍ଡ ହେଉନାହିଁ, ବା ତାହା କମିଯାଉଛି ବୋଲି କେତେକ ପତ୍ରିକା ସମ୍ପର୍କରେ ମତାମତ ବ୍ୟକ୍ତ କରିଥାଆନ୍ତି । ଏଇଟି ଷ୍ଟାଣ୍ଡାର୍ଡ କ'ଣ ବୋଲି ପଚାରିଲେ ସେ ନୀରବ ରହନ୍ତି । ଯଦି କେହି କେହି ଷ୍ଟାଣ୍ଡାର୍ଡର ଉଦାହରଣ ଦେବାକୁ ଯିବେ ତେବେ "ଝଙ୍କାର"କୁ "ଇଲଷ୍ଟ୍ରେଟେଡ୍ ୱିକ୍‌ଲି" ସାଙ୍ଗରେ, "ମାନସ"କୁ "ଇମ୍ପ୍ରିଣ୍ଟ" ସାଙ୍ଗରେ ବା "ଅଧୁନା"କୁ "ଟାଇମ୍ ମାଗାଜିନ" ସାଙ୍ଗରେ ତୁଳନା କରି ନିଜର ମୂର୍ଖତା ହିଁ ପ୍ରକାଶ କରିବେ ।

ଥରେ ଜଣେ 'ଭଦ୍ରଲୋକ' ଗୋଟିଏ ଇଲଷ୍ଟ୍ରେଟେଡ୍ ପତ୍ରିକାକୁ ଭାରି ଭଲ ବୋଲି କହିଲେ । କାରଣ ତହିଁରେ ଆମ୍ବ, ସାଇକେଲ, କଫି, ବାଣ୍ଟେଟ, ଟୁଥ୍‌ବ୍ରସ୍‌ କୋଟ ଆଦି ବିଷୟରେ 'ଟେକ୍‌ନିକାଲ' ଲେଖା ବାହାରୁଛି । ମୋର ମନେହୁଏ ଟେକ୍‌ନିକାଲ ଲେଖା ପାଇଁ ହୁଏତ ଏକ କୋଷ ଗ୍ରନ୍ଥର ପୃଷ୍ଠା ଓଲଟାଇବା ଭଲ । ମାତ୍ର ସେ

ଭଦ୍ରଲୋକ ଉକ୍ତ ପତ୍ରିକାର ଗୁରୁତ୍ୱ ତା'ର ରଙ୍ଗୀନ ଛବି ଓ ବୃହଦାକାର ପ୍ରକାଶନ ସଂସ୍ଥାକୁ ଦେଖି କଳନା କରିଥିଲେ । ୫୦ ପୃଷ୍ଠାରୁ ୨୫ ପୃଷ୍ଠା ବିଜ୍ଞାପନ । ରାଶିଫଳ ଗୋଟିଏ ପୃଷ୍ଠା, ସିନେମା ତିନି ପୃଷ୍ଠା, ଖେଳ ତିନି ପୃଷ୍ଠା, ହସ ଏବଂ ହସ ଗୋଟିଏ ପୃଷ୍ଠା ଏମିତି ଅଧାଅଧି ସାଧାରଣ ବିଷୟରେ ଗଳ୍ପ । ପରେ ବାକି ଅଶ୍ଳୀଳତାକୁ ଗାଳିଦେଇ ଅଶ୍ଳୀଳ ଶବ୍ଦସମ୍ଭ ବା କ୍ଷଣିକ ଉତ୍ତେଜନା ସୃଷ୍ଟି କଲପରି କେତେକ ଲେଖା ପ୍ରକାଶ କରି ପାଠକଙ୍କ ମନକୁ ଆକୃଷ୍ଟ କରାଯାଉଥିବା ପତ୍ରିକାକୁ କେତେକ ଖୁବ୍ ଉଚ୍ଚ ଦରର ବୋଲି କହନ୍ତି ।

ମୋଟ ଉପରେ ପତ୍ରିକାର ଷ୍ଟାଣ୍ଡାର୍ଡ ବା ମାନ ନିରୂପଣ କରିବାର ସମୁଚିତ ପନ୍ଥା ସାଧାରଣରେ ନାହିଁ । ଏଣୁ ଏହା ସମ୍ପାଦକଙ୍କୁ ଅଡୁଆରେ ପକାଏ । ମୋ ଅଭିଜ୍ଞତାରୁ ମୁଁ ଜାଣିଛି କେତେକ ସଂଖ୍ୟା ସମ୍ପର୍କରେ ବହୁ ପାଠକ ଭଲ କହିଲାବେଳେ କେତେକ ତାହାକୁ ଭଲ ନ ହୋଇଥିବାର କହିଛନ୍ତି ଏବଂ ସେହି ଅଭଲ କହିଥିବା ବକ୍ତାଙ୍କ ପାଇଁ 'ଭଲ' ହୋଇଥିବାବେଳେ ବହୁ ସାଧାରଣ ପାଠକ ତାହାକୁ ଭଲ ଲାଗିଲା ନାହିଁ ବୋଲି କହିଛନ୍ତି । ଏହା ଆମର ଏକ ସମସ୍ୟା ।

ପାଠକଙ୍କ ସମ୍ପର୍କରେ ଆମେ କହିଲୁ, ଯେ ତେଲେଙ୍ଗା ରିକ୍ସାବାଲାର ରିକ୍ସା ସିଟ୍ ତଳେ 'ଆନ୍ଧ୍ର ପ୍ରଭା' ମିଳୁଛି । ବଙ୍ଗୀୟ ପରିବାରରେ ବଙ୍ଗଳା ପତ୍ରିକା କିଣିବାର ଏକ ଖାନ୍ଦାନି ଫେସନ ଅଛି, ଓଡ଼ିଶାରେ ଲୋକେ ସ୍ୱାତନ୍ତ୍ରିକ । ଲେଖକଙ୍କ ସମ୍ପର୍କରେ ବି କିଛି ବକ୍ତବ୍ୟ ଅଛି । ପତ୍ରିକାର ସମ୍ପାଦନା ମାନକୁ ଦେଖି ଲେଖାଟିଏ ଲେଖି କରି ପଠାଇବା ଦିଗରେ ଆଗ୍ରହୀ ଲେଖକଙ୍କର ସଂଖ୍ୟା ଅତି କମ୍ । ଫିଚର ଲେଖା ଲେଖିବାରେ ଲୋକେ ଅଭ୍ୟସ୍ତ ନୁହଁନ୍ତି । ଏଣୁ ଏହିସବୁ ଗୋଳମାଳିଆ ପରିସ୍ଥିତିରେ ଓଡ଼ିଆ ପତ୍ରିକା ପ୍ରକାଶିତ ହେଉଛି ।

ଓଡ଼ିଆ ପତ୍ରିକା ଲେଖକଙ୍କୁ ପଇସା ଦିଏ ନାହିଁ, ଓଲଟି ନେବା କଥା ଏଯାଏ ମଧ୍ୟ ଜଣା ନାହିଁ । ବରଂ ଏଠି ଲେଖକ କେବଳ ତା'ର ଲେଖା ପ୍ରକାଶିତ ହେବା ଚାହେଁ, ପତ୍ରିକା ପ୍ରକାଶିତ ଲେଖା କିଏ ପଢ଼ିଲେ କି ନାହିଁ ସେଥିପ୍ରତି ନଜର ନାହିଁ । ପତ୍ରିକାର ଆର୍ଥିକ ଅବସ୍ଥା ଅତି ଭୟଙ୍କର ରହେ । ଏଜେଣ୍ଟମାନେ ଓଡ଼ିଆ ପତ୍ରିକା ନେବାକୁ ବିଶେଷ ଆଗ୍ରହୀ ନୁହଁନ୍ତି । ନେଲେ ଅଧେ ବିକନ୍ତି ଅଧେ ରଖନ୍ତି । ଯେତକ ବିକନ୍ତି ତା'ର ପଇସା ପଇଠ ହେଲେ ହୁଏ ନ ହେଲେ ନାହିଁ ।

ସେଦିନ ଜଣେ ଭଦ୍ରଲୋକଙ୍କ ନିକଟରେ ଜଣେ ପତ୍ରିକା ପ୍ରକାଶକ ପହଞ୍ଚିଲେ । ତାଙ୍କ କର୍ତ୍ତୃକ ଅନୁଷ୍ଠାନକୁ ପତ୍ରିକାଟି ମଗାଇବାକୁ କହିଲେ । ଭଦ୍ରଲୋକଙ୍କ ଅନୁଷ୍ଠାନକୁ ଅନ୍ୟାନ୍ୟ ବହୁ ଭଲ ଓ ମନ୍ଦ ପତ୍ରିକା ଆସୁଛି । ହୁଏତ ସେ ଉକ୍ତ ପତ୍ରିକାଗୁଡ଼ିକ ଆଗରୁ ପଢ଼ି ମଗାଇ ନାହାନ୍ତି । ଯେହେତୁ ଅନୁଷ୍ଠାନକୁ ପତ୍ରିକା ଆସିବା ଲୋଡ଼ା ଏଣୁ ଷ୍ଟାମ୍ପ ଏଜେଣ୍ଟଙ୍କୁ କହିଦେଲେ । ସେ ଯାହା ଯାହା ଦେଲା ସେ ସମସ୍ତ ରଖାଗଲା । ମାତ୍ର ପ୍ରକାଶକ ବନ୍ଧୁ ତାଙ୍କ ପତ୍ରିକା ଦେଖାନ୍ତେ ଭଦ୍ରଲୋକ ମାସେକାଳ ଲାଗି ଦେଖିଲେ । ଶେଷରେ କହିଲେ କି ନାହିଁ ମୁଁ ଜାଣେନାହିଁ । ତେବେ କହିବା କଥା, ଯାଚ ହେବାରୁ ଏହି ଦଶା ସିନା ହେଲା ।

ଅଧିକ କିଛି କହିବି ନାହିଁ । ଏଇ ଯେଉଁ ଗୋଳମାଳିଆ ପରିସ୍ଥିତି, ଏଥିରେ ପତ୍ରିକା ପ୍ରକାଶନର ଭବିଷ୍ୟତ ସମ୍ପର୍କରେ ବହୁ ପ୍ରଶ୍ନ ଉଠୁଛି ।



ଅଧୁନା, ୫ ବର୍ଷ
ଜୁନ୍, ଜୁଲାଇ ଓ ସେପ୍ଟେମ୍ବର, ୧୯୭୭
ଅଧୁନା, ୬ଷ୍ଠ ବର୍ଷ
ମାର୍ଚ୍ଚ ଓ ଏପ୍ରିଲ, ୧୯୭୮

# ଅନ୍ୟାନ୍ୟ କେତେକ ସମ୍ପାଦକୀୟ

## (କ) ଲେଖିକା ମାନଙ୍କ ସମ୍ପର୍କରେ

ଲେଖକ ବିଶେଷାଙ୍କ ହେଉ ନ ଥିବା ସ୍ଥଳେ ଲେଖିକା ବିଶେଷାଙ୍କ କରିବାକୁ 'ଅଧୁନା' ଏତେ ଆଗ୍ରହୀ କାହିଁକି ? ପୁରୁଷ ଓ ନାରୀମାନଙ୍କ ଲେଖାରେ କ'ଣ କୌଣସି ପାର୍ଥକ୍ୟ ଅଛି କି ? ନାରୀ ପୁରୁଷ ସମାନ ବୋଲି ଏକ ନୂତନ ଅଭିମନ୍ତ୍ରରେ ଦୀକ୍ଷିତ ହେଲାପରେ ଏହା ଏକ କପଟତା ବୋଲି ଆପଣ କହିପାରନ୍ତି ।

କିନ୍ତୁ ସବୁ ସମାନ ହେଉ କି ନହେଉ ସାହିତ୍ୟ କ୍ଷେତ୍ରରେ ଏହି ପାର୍ଥକ୍ୟ ରହିବ ହିଁ ରହିବ । ଅବଶ୍ୟ ପୁରୁଷଠାରେ ସ୍ତ୍ରୀତ୍ୱ ଓ ସ୍ତ୍ରୀଠାରେ ପୁରୁଷପଣିଆର ଆଧିକ୍ୟ ବେଳେ ବେଳେ ଲକ୍ଷ୍ୟ କରାଯାଇଥାଏ ଓ ସେମାନଙ୍କୁ ଆପଣ "ହି (He) ନୁହେଁ ବା ସି (She) ନୁହେଁ, ମାତ୍ର ଏକ ଅଣୁ ହୀନ ଇଟ (It)" ବୋଲି କହିପାରନ୍ତି । ଏଣୁ ଲେଖିକାମାନଙ୍କର ଲେଖା ଓ ଲେଖକମାନଙ୍କର ଲେଖାରେ କିଛି ପାର୍ଥକ୍ୟ ରହିବାଟା ନିଶ୍ଚିତ । ଏହା ଆଜିର କଥା ନୁହେଁ । ଆପଣ ପଛକୁ ଯାଆନ୍ତୁ ଯେତେବେଳେ ଲୋକେ ମୁହେଁ ମୁହେଁ ସାହିତ୍ୟ ସୃଷ୍ଟି କରୁଥିଲେ ସେତେବେଳେ କେତେକ ପୁରୁଷମାନେ ବୋଲୁଥିବା ସାହିତ୍ୟ ଥିଲା, ଶଗଡ଼ିଆ ଗୀତ ବା ମହିଁଷିଆଳ ଗୀତ । ସେମିତି କେବଳ ନାରୀମାନେ ବୋଲୁଥିବା ଗାଥା କବିତା, କାନ୍ଦଣା ଆଦି ସେତେବେଳର ସାହିତ୍ୟ ଥିଲା ଓ ଉଭୟ ଶ୍ରେଣୀର ସାହିତ୍ୟରେ ପାର୍ଥକ୍ୟ ଥିଲା । ଭାବଦୃଷ୍ଟିରୁ ନାରୀମାନଙ୍କର ଲୋକ ସାହିତ୍ୟରେ ସେମାନଙ୍କର ଆଶା ଆକାଙ୍‌କ୍ଷା, ଦୁଃଖ ଓ ଦୈନ୍ୟ ଆଦି ମନୋଭାବ ପ୍ରକାଶ ପାଉଥିଲାବେଳେ ପୁରୁଷମାନଙ୍କ ସାହିତ୍ୟ ଭିନ୍ନ ଭାବର ଥିଲା । ଶୈଳୀ ଦୃଷ୍ଟିରୁ ପ୍ରଥମ ଶ୍ରେଣୀର ସାହିତ୍ୟରେ ଲଳିତ, କୋମଳ ଶବ୍ଦ ଓ ଗୀତ ପ୍ରଯୋଜିତ

ହେଲାବେଳେ ଅନ୍ୟ ଧରଣର ସାହିତ୍ୟ ଥିଲା ଗମ୍ଭୀର, ରୁକ୍ଷ ଓ କଠୋର ଶ୍ରେଣୀର, କଥାଟା ବୁଝିବାକୁ ଚଳୁଳିଆ ପଣ୍ଡାଙ୍କର ଗୀତପ୍ରତି କାନ ଦିଅନ୍ତୁ ।

ଆଜି ଉଭୟ ପୁରୁଷ ଓ ସ୍ତ୍ରୀ ଏକ ଧରଣର ଶିକ୍ଷା, ଜ୍ଞାନ ଗ୍ରହଣ କରୁଥିଲେ ମଧ୍ୟ ଭାବଜଗତରେ ଅନେକ ପାର୍ଥକ୍ୟ ରହିଛି ବୋଲି ଆମେ ଅନୁଭବ କରୁଛି । ନାରୀ ଜାତିର ମନୋଭାବ, ମର୍ମବେଦନା ଓ କାହାଣୀକୁ ସାର୍ଥକ ରୂପେ ପ୍ରକାଶ କରିବା ପାଇଁ ଆମେ ଚେଷ୍ଟା କରିଛୁ । ୧୯୭୫ ମସିହା 'ଆନ୍ତର୍ଜାତୀୟ ନାରୀ ବର୍ଷ' ଉପଲକ୍ଷେ ଏପରି ଏକ ସଙ୍କଳନ କରିବା ପାଇଁ ଭାବିଥିଲୁ । ମାତ୍ର ସେତେବେଳେ ଅଗତ୍ୟା ଏହି ପ୍ରଚେଷ୍ଟାରୁ ବିରତ ରହିଥିଲୁ । କାରଣ ଆମେ ଜାଣିଥିଲୁ ଯେ ଦେଶ ବା ଜାତି କଥା, କେବଳ 'ଅଗଷ୍ଟ ପନ୍ଦର' ବା 'ଜାନୁୟାରୀ ଛବିଶ' ଦିନ ଖୁବ୍ ଜୋରରେ ଭାବିବା ଓ ପରଦିନ ସେ ଚିନ୍ତା ଆମଠୁ ବହୁ ଦୂରକୁ ପଳେଇଯିବା ପରି ଏକ ସାଧାରଣ ଧର୍ମର ଉପସ୍ଥିତି ହେତୁ ସେହି ବର୍ଷ ଅନେକ ପତ୍ରିକା ଲେଖିକା ବିଶେଷାଙ୍କ ପ୍ରକାଶ କରିବେ ତଥା ପରେ ପରେ ନାରୀମାନଙ୍କ କଥା ଭୁଲିଯିବେ । ସେହି ଦୃଷ୍ଟିରୁ ଆମେ ସେତେବେଳେ ଲେଖିକା ବିଶେଷାଙ୍କ ପ୍ରକାଶ କରି ନ ଥିଲୁ । ଆଜି ସେହି ପ୍ରଚେଷ୍ଟାକୁ ରୂପ ଦେଉଛୁ ।

ଏଇଠି ଗୋଟିଏ କଥା ମନେପଡ଼ିଲା । ଜନୈକ ଅଣ-ଓଡ଼ିଆ ପ୍ରଯୋଜକଙ୍କ ଦ୍ୱାରା ପ୍ରଯୋଜିତ ଓଡ଼ିଆ ଚଳଚ୍ଚିତ୍ର ସମ୍ପର୍କରେ ଜଣେ ଅଭିନେତା ବନ୍ଧୁ କହିଲେ ଯେ ଉକ୍ତ ଚଳଚ୍ଚିତ୍ର କଳା ଦୃଷ୍ଟିରୁ ଉନ୍ନତ ନ ହେଲେ ମଧ୍ୟ Ladies Sentimentକୁ କେନ୍ଦ୍ର କରି ଲେଖା ହୋଇଥିବା ହେତୁ ବେଶ୍ ଜନପ୍ରିୟ ହୋଇ ପାରିଛି । ଅର୍ଥାତ୍ ନାରୀମାନଙ୍କର ସେଣ୍ଟିମେଣ୍ଟ ଏକ ଭିନ୍ନ ଶ୍ରେଣୀର ଓ ତାହା ପାରିବାରିକ ସୁଖ ଦୁଃଖ ଆଦିକୁ କେନ୍ଦ୍ର କରି । ତେଣୁ ସେହି ସେଣ୍ଟିମେଣ୍ଟକୁ ଏହି ବିଶେଷାଙ୍କ ଯଦି ପ୍ରକାଶ କରିବାରେ ସମର୍ଥ ହୋଇଥାଏ ତେବେ ଆମ ଉଦ୍ଦେଶ୍ୟ ଚରିତାର୍ଥ ହେଲା ବୋଲି ବୁଝିବାକୁ ହେବ, ସ୍କୁଲ କଲେଜରେ ନାରୀମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ ପରି ଉଦ୍ଦେଶ୍ୟ ଏହି ବିଶେଷାଙ୍କ ପ୍ରକାଶ ପଛରେ ନାହିଁ ।

ଏହା ଓଡ଼ିଆ ସାହିତ୍ୟରେ ନାରୀ ଜାତିର ସାହିତ୍ୟିକ ପ୍ରତିଭାର ଅଭିବୃଦ୍ଧି ସମ୍ବନ୍ଧରେ ସମ୍ୟକ୍ ସୂଚନା ଦେବ ବୋଲି ଆମେ ଆଶାକରୁ । ତାତ୍ତ୍ୱିକ ତଥା ମାନସିକ ଚିନ୍ତାଧାରାର ବିଶ୍ଳେଷଣରେ ସେମାନେ ଯେ ଏକ ସ୍ୱତନ୍ତ୍ର ସ୍ତରରେ ପହଞ୍ଚି ପାରିଛନ୍ତି ତା'ର ପ୍ରମାଣ ପାଇଁ ଏପରି ଏକ ବିଶେଷାଙ୍କର ସୃଷ୍ଟି ।

## (ଖ) ଅଧୁନା କାହିଁକି ?

ଏ ମହିମାର ମଞ୍ଚ ଉପରେ ଠିଆ ହୋଇ ଅତୀତ ଓ ବର୍ତ୍ତମାନକୁ ଆଖି ପକାଇଲେ ଦେଖିବେ କେତେ ଯେ ପତ୍ରିକା ବାହାରିଛି, ବାହାରୁଛି, ତା'ର ଇୟତ୍ତା ନାହିଁ। ସମ୍ପାଦକ ହେବାର ଦୁର୍ଦ୍ଦମନୀୟ ଇଚ୍ଛା ହେତୁ ହେଉ ବା ସାହିତ୍ୟ ସେବା କରିବା ନିମିତ୍ତ ରଥୀଜନୋଚିତ ଉତ୍ସାହରୁ ହେଉ ବା ବ୍ୟବସାୟୀ-ବୁଦ୍ଧି ପ୍ରଣୋଦିତ ହୋଇ ହେଉ କିମ୍ବା ଅନ୍ୟ ନିକୃଷ୍ଟତର ନିଜର ତାଡ଼ନାଏ କାରଣ— ଅଦର୍ଶିତ ଅମନୋନୀତ ଲେଖାର ମୁଦ୍ରିତ ରୂପ ଦେଖିବାର ଦୁର୍ନିବାର କାମନା ହେତୁ ହେଉ, ପତ୍ରିକା ପ୍ରକାଶନର ଏ ଯେଉଁ ଗୋଟାଏ ବିରାଟ ଜୁଲୁସ, ତାକୁ ଦେଖି ଆପଣ ନିଶ୍ଚୟ ଆତଙ୍କିତ ହୋଇଛନ୍ତି, ଆମୋଦିତ ହୋଇଛନ୍ତି ଓ ଆଶ୍ଚର୍ଯ୍ୟାନ୍ୱିତ ହୋଇଛନ୍ତି! ଏ ଜୁଲୁସ୍ ଖୁବ୍ ଲମ୍ବା ଓ ରଙ୍ଗ ବେରଙ୍ଗୀ। ତା'ର ଉତ୍ସାହ, ଗତାଗତ ଦ୍ରୁତ ବର୍ଦ୍ଧିଷ୍ଣୁ ଦରଦାମକୁ କମାଇବା ପାଇଁ ସଙ୍କଳ୍ପବଦ୍ଧ ଉଡ଼ାଟିଆ ଶୋଭାଯାତ୍ରାକାରୀଙ୍କର ଉତ୍ସାହ। ତଥାପି ବାଘ ମଣିଷକୁ ଖାଏ— ଲୋକାପବାଦ ଦୁର୍ନିବାର ଓରେ ଏବେ ବି ଅନେକ କହନ୍ତି— ପତ୍ରିକା ବେଶୀ ଦିନ ଚାଲିବ ତ? ବଞ୍ଚିବ ତ? କେହି ପତ୍ରିକା କିଣୁ ନାହାନ୍ତି। କେହି ପତ୍ରିକା ପଢ଼ୁ ନାହାନ୍ତି। ତେଣୁ ପତ୍ରିକା ପ୍ରକାଶ କରୁଛ କାହିଁକି? ଏତେ ପତ୍ରିକା ଥାଉ ଥାଉ ପୁଣି 'ଅଧୁନା' କାହିଁକି?

କିନ୍ତୁ ଏବେ ତ ଓଡ଼ିଶାରେ ସବୁ ମାସିକ ପତ୍ରିକା ମିଶିମାଶି ପ୍ରାୟ ୫ ହଜାରରୁ ୩୦ ହଜାର ବିକା ହେଉଛି ଯଦିଓ ଗୋଟିଏ ହେଲେ ପତ୍ରିକା ଦଶ ବାର ହଜାର ପାଠକଙ୍କ ରୁଚିବୋଧକୁ ସନ୍ତୁଷ୍ଟ କରି ପାରୁନାହିଁ। କାହିଁକି?

ପ୍ରଥମ କଥା ସାଧାରଣ ପତ୍ରିକାରେ ପ୍ରବନ୍ଧ କହିଲେ ବେଶୀ ଭାଗ ସାହିତ୍ୟ ସମାଲୋଚନା। ଭଲ ପ୍ରବନ୍ଧ ବା ଯାହାକୁ ଫିଚର ଲେଖା କୁହାଯାଏ ତାହା ନାହିଁ। ତେଣୁ ଲୋକ ପ୍ରବନ୍ଧ ବିଭାଗ ପ୍ରତି ନିରାସକ୍ତ। କବିତା ଦୁର୍ବୋଧ। ବାକି ଯାହା ଆକୃଷ୍ଟ କରେ ତାହା ହେଉଛି ଗଳ୍ପ। ଗଳ୍ପରେ ମଧ୍ୟ ବେଳେବେଳେ କ୍ଲିଷ୍ଟତା ପ୍ରବେଶ କରୁଛି ବା ନୂତନତା (ବିଶେଷତଃ ପଡ଼ୋଶୀ ସାହିତ୍ୟ ତୁଳନାରେ) ନାହିଁ। ତେଣୁ ସାମଗ୍ରିକ ଭାବରେ ପତ୍ରିକା ଏପ୍ଲାଇଡ୍ କଣ୍ଡିସନଡ୍ କାଚକବାଟ ଦିଆ ଦୋକାନ ବା ଓ୍ୱେଲଡ୍ରେସ୍ଡ୍ ଖଣ୍ଡଏ ମା ଠିଆ ହୋଇଥିଲେ ବି ଯେଉଁଠାକୁ ସର୍ବସାଧାରଣ ଯିବା ପାଇଁ ଡରିବେ ବା ଘାବରେଇ ଯିବେ।

ଏ ସମସ୍ୟା ହେତୁ ସାହିତ୍ୟ ସାଧାରଣଙ୍କଠାରୁ ଦୂରେଇ ଯାଉଛି ଓ ସେ ସମସ୍ୟାକୁ ସମାହିତ କରିବା ପାଇଁ ଅଧୂନା ବାହାରୁଛି । ଗୋଠ ମାଡଲେ ଖଣ୍ଡିଆ ମାନେ ନ୍ୟାୟରେ 'ଅଧୂନା' ପତ୍ରିକାର ରଙ୍ଗ ବେରଙ୍ଗୀ ଜୁଲୁସ୍ ସାଙ୍ଗରେ ସାମିଲ ହୋଇ ବାଲୁବଜାରରେ ସାହିତ୍ୟ ଗଳୁ ମାରିବାକୁ ବାହାରୁ ନାହିଁ । ବରଂ କେବଳ ଗପକୁ ପରିବେଷଣ କରିବ ଯାହାକୁ 'ଗଳର ବୁଢ଼ାଗୃଷୀ ଓ ତା'ର ଦଶ ବର୍ଷର ନାତି ସମସ୍ତେ ବୁଝିପାରିବେ ।'

ଗପକୁ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଗପ ହେବାକୁଇ ପଡ଼ିବ । ବ୍ୟଞ୍ଜନା ଓ ପ୍ରଭାବ ( impact ) ଉପରେ ଗୁରୁତ୍ୱ ଦିଆଯିବ । ଗପକୁ ସମସ୍ତ ପ୍ରକାର ଭଣ୍ଡାମିରୁ ଦୂରରେ ରଖି, ଅନୁଭୂତିର ସାନ୍ଦ୍ରତା, ବାସ୍ତବତାର ସ୍ୱୀକାର, ଭାଷା ବ୍ୟବହାରରେ ଶାଳୀନତା, ଭାବବେଗର ରୂପାନ୍ତରିତ ସାର୍ବଜନୀନତା ଉପରେ ପ୍ରାଧାନ୍ୟ ଦେଇ ଋଦ୍ଧିମନ୍ତ ହେବାକୁ ପଡ଼ିବ । ସେହି ଧରଣର ଗପର ସମାବେଶ ହେବ 'ଅଧୂନା'ରେ । 'ଅଧୂନା'ର ଏ ଆଭିମୁଖ୍ୟ ଅନ୍ୟ କେଉଁଠି ସୁରକ୍ଷିତ ହୋଇଥିବାର ହୃଦ୍‌ବୋଧ ନ ହୁଅନ୍ତେ ଏ ଆୟୋଜନ ।

ଆୟୋଜନ କରାଯାଇଛି ହେଲେ ନାଚଲା, ଗାଇଲାବାଲାଙ୍କଠାରୁ ଲାଇଟ ଓ ମାଇକ୍‌ବାଲା ପର୍ଯ୍ୟନ୍ତ ସମସ୍ତେ ସହଯୋଗ କଲେ ତାମସା ସିନା ଜମିବ । ସେମିତି ଲେଖିଲାବାଲାଙ୍କଠାରୁ ବିକାଳ, ପଢ଼ିଲା ଓ ଛାପିଲାବାଲାଙ୍କ ସହଯୋଗରେ 'ଅଧୂନା'ର ସ୍ଥିତି ସିନା ସମ୍ଭବ । ତେଣୁ ନଟେଇ ଧୋବଣୀଠାରୁ ପିଢେଇମା ଶଉରୁଣୀ ଓଗେର ସମସ୍ତଙ୍କୁ କୋଟି କୋଟି ଦଣ୍ଡବତ ଯେ 'ଅଧୂନା' ପ୍ରତି ଆଜ୍ଞା ହେଉ, ଆଦର ହେଉ, ନଜର ଥାଉ, ସାହାଯ୍ୟ ଥାଉ ।

## (ଗ) ନଈରେ ବାଲିଆ ଚଢ଼ୁଛିଲା

ସମସ୍ତେ ଜାଣନ୍ତି ନଈରେ ବାଲିଆ ଚଢ଼ୁଛି । ପୁଣି କାଲିଆ ଫେରି ଆସିବ ବୋଲି ବିଧବା ସିନ୍ଦୂର କଜଳ ନାଇ ବସେ । କିନ୍ତୁ ପ୍ରକୃତରେ କାଲିଆ ଲେଉଟେ କି ନାହିଁ ସେ ବିଷୟରେ କେହି ମୁଣ୍ଡ ଖେଳାନ୍ତି ନାହିଁ ଠିକ୍ ଯେମିତି ବିଧବାର ଏହି ସିନ୍ଦୂର କଜଳ ନାଇବା ସବୁଦିନ ପାଇଁ ରହିଲା କି ନ ରହିଲା ବିଷୟରେ କେହି ଭାବନ୍ତି ନାହିଁ । ଭାବିବାକୁ ତର କାହାର ଅଛି ? ସମସ୍ତେ ତ କକ୍ଷଚ୍ୟୁତ ଗ୍ରହ ପରି ପରସ୍ପରଠାରୁ ସମ୍ପର୍କ ବିହୀନ ହୋଇ ଧାଇଁଛନ୍ତି । କିଏ

କାହାକୁ ପଚାରୁଛନ୍ତି ? ସମସ୍ତେ ତ ନିଜ ଗୋଡ଼ରେ ନିଜେ ଚାଲିବା ପାଇଁ। ସେହି ପାଟଣା ଚିନ୍ତା ତ ଚମତ୍କାର। 'ଶୁଣନ୍ତୁ ଶୁଣନ୍ତୁ' ବୋଲି ହଜାରେ କହିଲେ ବି ଫାଇଦା କିଛି ନାହିଁ। ଅସଲ ଚେହେରାକୁ ଲୁଚେଇ ଆମେ ସମସ୍ତେ ମୁଖା ପିନ୍ଧି ସୁଆଙ୍ଗ କରୁଛୁ। ଫଳରେ ପ୍ରକୃତ ଚେହେରା ଲୁଚି ଅନ୍ୟ ଏକ ଚେହେରା ଦିଶିଲା ପରି ଆମର ଭାଷା ମଧ୍ୟ ଉଦ୍ଦିଷ୍ଟ ଅର୍ଥ ଭିନ୍ନ ଅନ୍ୟ ଏକ ଅ(ନ)ର୍ଥକୁ ବୁଝାଉଛି। ସାହିତ୍ୟରେ କିଛି ନୂଆ କହିବାର ନାହିଁ ବୋଲି ଲୋକେ ମନେ କରୁଛନ୍ତି ଯଦିଓ ନଦୀ ବୃଦ୍ଧିଠାରୁ ଦର ବୃଦ୍ଧି, ସେହି ପୋଡ଼ିଠାରୁ ଘରପୋଡ଼ି ଆଦିର ଘନଘଟା ମଧ୍ୟରେ ଆମେ ସବୁ ବରଷ ଅଗଷ୍ଟ ପନ୍ଦରକୁ ସ୍ୱାଗତ ଜଣାଇ କବିତା ଲେଖୁଛୁ, ଗଳ୍ପ ଲେଖୁଛୁ। ୪୭ର ଆଶା ଆନନ୍ଦ ୭୪କୁ ନ ରହୁ ପଛେ, ଆମେ ଜବରଦସ୍ତ ସାହିତ୍ୟ ସୃଷ୍ଟି କରି ଚାଲିଛୁ।

କଟକ, ରାଉରକେଲା, ସମ୍ବଲପୁର ପରି ବିଭିନ୍ନ ବସାରେ ଖୁନ୍ଦାଖୁନ୍ଦି ଆମେ ରହିଲେ ମଧ୍ୟ ଆମ ଭିତରେ ଭାବଗତ ଆଦାନ ପ୍ରଦାନ ନାହିଁ। ଆମ ସାହିତ୍ୟରେ କିଛି ନୂଆ କହିବାର ନାହିଁ। ପ୍ରକୃତ କଥା ଏବଂବିଧ ସମ୍ପର୍କହୀନତା ଓ ମୌନତା ଯନ୍ତ୍ର ସଭ୍ୟତାର ଦାନ, ବ୍ୟବସାୟୀ ଅର୍ଥକୈନ୍ଦ୍ରିକ ଏଷ୍ଟାବ୍ଲିସ୍‌ମେଣ୍ଟର ପ୍ରୋତ୍ସାହନ। ଅସଲ ପକ୍ଷରେ ନିପୀଡ଼ିତ ଜନତା ବରଂ ଏବେ ଚିତ୍କାର କରି ନିଜର କଥା କହିବା ପାଇଁ ଚାହୁଁଛି। ଭିତରେ ଭିତରେ ଘାତରେ ମରି ହୋଇ ଗୁମୁରିବା ପାଇଁ ସାହସ ନାହିଁ, ଶକ୍ତି ନାହିଁ ବା ଧୈର୍ଯ୍ୟ ନାହିଁ।

ଆଜି ପୁଣି ନିଈରେ ବାଲିଆ ଲେଉଟୁଛି। ଅଗଷ୍ଟ ପନ୍ଦର ଆସିଛି। ଅଧୁନାର ଦ୍ୱିତୀୟ ବର୍ଷ ତୃତୀୟ ସଂଖ୍ୟା ପ୍ରକାଶ ପାଉଛି। ଏ ଅବସରରେ ଆମର କହିବାର କଥା ଯେ ଆଧୁନିକ ସାହିତ୍ୟରେ କିଛି କହିବାର ନାହିଁ, ଏଇ ଧାରଣାଟିକୁ ବଦଳାଇ ଦିଆଯାଉ। କାରଣ ସମାଜର ଦୁସ୍ଥିତି ଓ ଜୀବନର ବିକୃତିକୁ ପରିବର୍ତ୍ତନ କରିବା ପାଇଁ କଥା କହିବାର, ଭାବ ସଞ୍ଚରଣ କରିବାର ସୁଯୋଗ ସୃଷ୍ଟି କରାଯିବା ଏକାନ୍ତ ଦରକାର। କାହାଣୀ ତା କଥା କହିଚାଲୁ— ଜନଗଣର କଥା ଓ ବ୍ୟଥା, ସ୍ଥବିର ଏଷ୍ଟାବ୍ଲିସ୍‌ମେଣ୍ଟ ଦ୍ୱାରା ପ୍ରୋତ୍ସାହିତ ମୌନତା ଓ କକ୍ଷଚ୍ୟୁତର ବିଚ୍ଛିନ୍ନତାକୁ ବିରୋଧ କରି ଏକ ଭାବ ସଞ୍ଚରଣଶୀଳ ସୁସ୍ଥ ସୁନ୍ଦର ମାନବ ସମାଜର ସ୍ଥାପନା ନିମିତ୍ତ।

# (ଘ) ବୃତ୍ତ

ଆଜିର ଯୁଗ ଗାଡ଼ି ଘୋଡ଼ାର ଯୁଗ— ବୃତ୍ତାକାର ଚକ ଉପରେ ଚଢ଼ି ଗଡ଼ୁଛନ୍ତି, ଠିଆ ହୋଇଛନ୍ତି, ପଛକୁ ଫେରୁଛନ୍ତି । ସମୁଦ୍ରର ବେଳାଭୂମିରେ ନିଜକୁ ଏକମାତ୍ର ବାଲିଗଚ୍ଛଡ଼ା ଭଳି ଥୋକାଏ ଲୋକ ନିଜକୁ କେନ୍ଦ୍ରବିନ୍ଦୁ କରାଇ ଅନ୍ୟମାନଙ୍କୁ ସେମାନଙ୍କ ଚାରିଧାରେ ପ୍ୟାରେଡ୍ କରାଇବାକୁ ଚାହୁଁଛନ୍ତି । ବେଲ୍‌ବଟମ ପିନ୍ଧି ଷ୍ଟେରମିନାରରେ ଗଞ୍ଜେଇ ପୁରାଇ ପାର୍କ ବା କାଠଯୋଡ଼ି କୂଳରେ ସଞ୍ଜ ବିତାଉଥିବା ଯୁବକଠାରୁ ବୃନ୍ତମୁହାଁ ମାଂସହୀନ ଯୁବତୀ ପର୍ଯ୍ୟନ୍ତ ଦଳେ ଝାଲି ନିଜକୁ ଅନ୍ୟମାନଙ୍କଠାରୁ ସମାନ ଦୂରତ୍ୱରେ ରଖି କେନ୍ଦ୍ର ହୋଇ ବୃତ୍ତ ରଚନାରେ ବ୍ୟସ୍ତ । "ମାନୁଷେର ମାଝେ ଆମି ବଞ୍ଚିବାରେ ଚାଇ" କହି ନିଃସଙ୍ଗତାର ତୀବ୍ର ଜ୍ୱଳନରେ ଜଳି ଜଳି ଜଳି ପୋଡ଼ି ଯାଉଛନ୍ତି । କ୍ଷଣିକ ପ୍ରେମ ବା ଯୌନ କ୍ରୀଡ଼ାର ପିପାସୀ ହୋଇ ଥୋକାଏ ଖାଲି ଅତୃପ୍ତ କାମନାର ପରିତୃପ୍ତି ନିମିତ୍ତ ଅସାମର୍ଥ୍ୟରେ ଜୀବନକୁ ଜଟିଳ ବୋଲି ମନେ କରୁଛନ୍ତି, ଖାଦ୍ୟାଭାବରେ କିନ୍ତୁ ନୁହେଁ ।

ରଙ୍ଗରଙ୍ଗିଆ ଶାଢ଼ୀ, ଢଙ୍ଗଢଙ୍ଗିଆ ପୋଷାକ, ଫୁଲୁର ତେଲ, ବବୁର ବାଳ, ଗାଢ଼ବାଢ଼ ଢଙ୍ଗି ଘାଗୁଡ଼ି, ବଡ଼ ବିଜ୍ଞାପନର ନାରୀ, ହିନ୍ଦୀ ଫିଲ୍ମ ମିଶ୍ର ଅର୍ଥନୀତିରେ ପୁଞ୍ଜିବାଦର ପ୍ରାଧାନ୍ୟ ଓ ଦେଖେଇ ହେବାର ଘୋଡ଼ା ଦୌଡ଼ ବୃତ୍ତ ରଚନାର ଦୁର୍ବାର କାମନାରେ ଇନ୍ଧନ ଯୋଗାଉଛନ୍ତି । ପଢ଼ି ଉଡ଼ି ଖଣ୍ଡିଆ ହେଲେ ବି ନିଜର ଦାୟୁମାତ୍ର ଅନ୍ତଃସାରଶୂନ୍ୟତା ପ୍ରତି ସଚେତନ ନ ହୋଇ ଧାଉଁଛନ୍ତି ମରୀଚିକା ପଛରେ । ବାଟିକ୍‌ପ୍ରିଣ୍ଟ ଶାଢ଼ୀ ସାଙ୍ଗରେ ଡ଼ାଲଇ ଚପଲ ପିନ୍ଧି ବା ଧୋଇ ଶୁଖେଇ ନିତି ପିନ୍ଧୁଥିବା ଏକମାତ୍ର ଟେରିଲିନ୍ ସାର୍ଟ ପ୍ୟାଣ୍ଟ ହାଲକୁ ସମ୍ବଳ କରି ବୃତ୍ତର କେନ୍ଦ୍ରବିନ୍ଦୁ ହେବା ପାଇଁ ପ୍ରମେକ୍ଷ୍ଣା ଉଦ୍ୟମ କରୁଛନ୍ତି । ନିଜର ସ୍ଥିତି ସହ ଏହି ଅମୃତାକାଙ୍କ୍ଷା ବେତାଳ ଧରୁଛି, ଠୋକ୍କର ଖାଉଛି, ପିମ୍ପୁଡ଼ି ସହ ପିମ୍ପୁଡ଼ିର ଧକ୍କା ପରି କହୁଛନ୍ତି ସ୍ୱବିରୋଧ ବା ଆତ୍ମସଂଘର୍ଷ ।

ନିଜକୁ ବୁଝାଇଲା ପରି ଲାଏସେଜ୍ ଫେୟାର ବା ବ୍ୟକ୍ତିସ୍ୱାତନ୍ତ୍ର୍ୟର ସ୍ଲୋଗାନ ଦେଉଛନ୍ତି । ବୃତ୍ତ ରଚନାର ଏବଂବିଧ ପ୍ରାଣାନ୍ତକ ଉଦ୍ୟମରେ ସାର ହେଉଛି ଖାଲି ଯୌନ ସନ୍ତ୍ରାସ ସୃଷ୍ଟି କରୁଥିବା ଅବାଞ୍ଛିତ ସାମାଜିକ ଅପରାଧୀ ହେବା ।

ଘରଛପୁ ପିଲାଙ୍କ ପାଇଁ ଆସିଥିବା ମାର୍କିନ ଖାଦ୍ୟକୁ ରେସ୍ତରେ ଖାଇ ସମାଜ ପରି ସାହିତ୍ୟରେ ମଧ୍ୟ ଦେଲେ ଅବାଞ୍ଛିତ ବ୍ୟକ୍ତି ନିଃସଙ୍ଗତା, ବ୍ୟକ୍ତିସ୍ୱାତନ୍ତ୍ର୍ୟ,

ଯୁଗପଲ୍ଲବୀ, ଆତ୍ମସନ୍ଦର୍ଶର ଧ୍ୱଜା ଧାରଣ କରି ଯୌନ ସନ୍ତାପ କାତରତା ଗ୍ଲାନିକୁ ଉତ୍ତେଜନାବାଧ୍ୟ ସାହିତ୍ୟ ମାଧ୍ୟମରେ ପ୍ରକାଶ କରୁଛନ୍ତି । ଅସ୍ତ୍ରହୀନ ଦ୍ୱୀପ୍ତ ବୃତ୍ତ ରଚନାକୁ ସ୍ୱାଗତ ଜଣାଉଛନ୍ତି । ବସ୍ତ୍ରାବୃତ୍ତ ନାରୀର ରୂପବର୍ଣ୍ଣନା ନାଁରେ ଉଲଗ୍ନ ନାରୀର (ଅ)ଶାଳୀନ ରୂପବର୍ଣ୍ଣନା କରୁଛନ୍ତି । କିନ୍ତୁ ବୃତ୍ତିନାହାନ୍ତି ଯେ ଦେଖେଇ ହେବାର ପ୍ରତିଯୋଗିତାରେ କୃତ୍ରିମ ଅଭାବ ସୃଷ୍ଟି କରି ସ୍ୱଭାବ ନଷ୍ଟ କରିବା, ବୃତ୍ତ ରଚନା କରିବା ଆମର କାମ୍ୟ ନୁହେଁ ।

ବାସ୍ତବବାଦ, ସାମୁହିକ କଲ୍ୟାଣ, ସାମାଜିକ ଦାୟିତ୍ୱବୋଧ ଆଦି ଆମେ ଗ୍ରହୁଁ କାରଣ ଗତିହୀନ ଅଥଚ ଗତିର ଭ୍ରମ ଉପୁଜାଉଥିବା ବୃତ୍ତ ନୁହେଁ ମାତ୍ର ପ୍ରଗତିର ପ୍ରତୀକ ସରଳରେଖା ଆମର କାମ୍ୟ ।

## ବୃତ୍ତ (୨)

ଦେଖେଇ ହେବାକୁ ଯାଇ ଜନୈକ କଲେଜ ଛାତ୍ର ସର୍ବଜନ ସମକ୍ଷରେ କାଠକବାଟରେ ମୁଷ୍ଟିଘାତ କରି ହାତ ଖଣ୍ଡିଆ କରିବା ଯାହା ସେକ୍ସପିଅର ନଥିଲେ, ପାର୍ଲସ୍ ବକ୍ ବୋଲି ବହୁ ଲେଖକ ଥିଲେ, ଭଞ୍ଜ ଲେଖୁ ନଥିଲେ, ସାରଳାଦାସ ବିଡ଼ମ୍ବନା ବୋଲି କହିବା ମଧ୍ୟ ଠିକ୍ ସେଇଆ, ଓଡ଼ିଆରୁ 'ନ', 'ଙ', 'ଷ୍ଠ', ଆଦି ଉଠାଇ ଅନୁସ୍ୱାରର ବୃତ୍ତ ଆଙ୍କି 'ଦ', 'ଗ', ଓ 'ଷ୍ପ', ଲେଖିବା ମଧ୍ୟ ସେଇପରି । ଧ୍ୱନିକୁ ବର୍ଗରେ ବିଭକ୍ତ କରିଥିବା ପାଣିନୀଙ୍କ ପରେ ଆଉ ଜଣେ ପାଣିନୀ ନ ଆସିବା ଯାଏଁ ଏ ବୃତ୍ତ ଅଙ୍କା ବନ୍ଦ ରଖାଯାଉ କାରଣ ବ୍ରାହ୍ମଣ ପିଲାର ନଶ ରଖିବା ବ୍ୟତୀତ ପଲ୍ଲବର କିଛି ମୂଲ୍ୟ ନାହିଁ ।

## (ଙ) ହାଣ୍ଡି ଭିତରେ ପିହାଣଟାଏ

ଏବେ ଏବେ ଜାତୀୟକରଣ ନିମିତ୍ତ ପ୍ରବଳ ଉତ୍ସାହ ଓ ଉନ୍ମାଦନା କ୍ରମଶଃ ତୀବ୍ର ନୈରାଶ୍ୟରେ ପରିଣତ ହୋଇ ଗ୍ଲଲାଣି । ଏ ପରିପ୍ରେକ୍ଷୀରେ ଥୋକାଏ ଲୋକ ଜାତୀୟକରଣର ଉପମେରଟ ସମ୍ପର୍କରେ ଚକ୍କା ପିଟି ଗ୍ଲଲଛନ୍ତି । ଜାତୀୟକରଣ, ପୋଲିସ୍ ଓ ଡ଼ାକ୍ତର— ଏମାନେ ଉଗ୍ର ଆସ୍ଥାର ପ୍ରତୀକ । ସାଧାରଣ ଜନତା ଭାବେ ଯେ ଜାତୀୟକରଣ ହେଲେ ରାତାରାତି ଦେଶ ସମୃଦ୍ଧ ହୋଇଯିବ ଯେମିତି କେଶ୍ ଦାୟ଼ୀର କଲ୍ ଷଣି ପୋଲିସ୍ ଗ୍ରେଫ୍କୁ ଅଲବତ ଧରିବ ଓ ରୋଗୀକୁ ଡ଼ାକ୍ତରଖାନା ନେଲେ ସେ ନିଶ୍ଚେ ଭଲ ହୋଇଯିବ ।

ମାତ୍ର ଏ ଜାଗାରେ ଉଚ୍ଚାର୍ଥ ନବକଲେ- ଜାତୀୟକରଣର ଶୁଭାରମ୍ଭ କରାଯିବ, ପୋଲିସ୍ ନଗରଘର ଗଲ ହେବା କଥା କୁହାଯିବ ଓ କଲିକତାରୁ ବାଲେଶ୍ୱର ଯାଏଁ ଡାକ୍ତରଖାନା ଗଢ଼ି ଦିଆଯିବ, ଡାକ୍ତରମାନଙ୍କୁ ନିର୍ଘାତିଆ ମାଡ଼ ଦିଆଯିବ ।

ଜାତୀୟକରଣ ବ୍ୟର୍ଥ ହେବାର ନୁହେଁ । ବିଶେଷକରି ଭାରତ ପରି ଦେଶ ପାଇଁ ଏହା ଏକମାତ୍ର ପନ୍ଥା । କିନ୍ତୁ ଏହା ବିଫଳ ହେବାର କାରଣ ମିଶ୍ର ଅର୍ଥନୀତି । କାଗଜ ପତ୍ରରେ ସମାଜବାଦୀ କାର୍ଯ୍ୟକ୍ରମ ହାତକୁ ନେଲାବେଳେ ଢୋଲ ଭିତରେ ମୂଷା ନ୍ୟାୟରେ ପୁଞ୍ଜିବାଦ ପ୍ରାଧାନ୍ୟ ଲଭୁଛି । ଏଣେ ସମ୍ପତ୍ତି ଉପରେ ଅଧିକାର ଥିବାରୁ ଲୋକେ ସରକାରୀ ମାଲ୍ ଦରଆଣେଁ ଡାଲ୍ କରି ନିଜ ପୁଞ୍ଜି ବଢ଼ାଇବାରେ ବ୍ୟସ୍ତ । ଏଣୁ **ଜାତୀୟକରଣ** ବିଫଳ ହେଉଛି । ପାଠ୍ୟପୁସ୍ତକର ଜାତୀୟକରଣ ହେଲା । ଯାହାକୁ ବିଫଳ କରିଛନ୍ତି କର୍ମଚାରୀ ବୃନ୍ଦ । ଅଙ୍କ ଏଠି ବିଶେଷଜ୍ଞ । ନହେଲେ କି ପ୍ରୁଫରିଡ଼ିଂର ଅଭିଜ୍ଞତା ନଥାଇ ପୃଷ୍ଠା ପ୍ରତି ଟଙ୍କାଏ ଲେଖା ମାରି ଭୁଲ ଗୁଡ଼ ଘରେ ନିଷ୍ଟୁପ ବସିଥାନ୍ତେ ! ଜାତୀୟକରଣ ବଦନାମ ହୁଅନ୍ତା ନା ? ଏଇମିତି କେତେ କଥା । ତେଣୁ ହାଣ୍ଡି ଟା ଭିତରେ ପିହାଣିଟାଏ ଦେଖି ଚମକିବା ଅପେକ୍ଷା ପଞ୍ଚମ ବାହିନୀକୁ ଚିହ୍ନି ନେବା ଭଲ ।

## (ଚ) ଓଡ଼ିଆ ସାହିତ୍ୟ ଓ ଅନ୍ତର୍ଜାତୀୟ ସାହିତ୍ୟ

ଏବେ ବି ବହୁ ବିଶିଷ୍ଟ ଲେଖକ ଓଡ଼ିଶାରେ ଜନ୍ମଗ୍ରହଣ କରିଥିବା ହେତୁ ଭାଷାକୁ ନିନ୍ଦୁଛନ୍ତି, କାରଣ ଆଜି ଯେତେ ଯାହା ହେଉନା କାହିଁକି ଆମେ ଅନେକ ସମୟରେ ପୂଜ୍ୟପୂଜାର ବ୍ୟତିକ୍ରମ କରିବାରେ ଅଭ୍ୟସ୍ତ ହୋଇଛୁ । ତା' ଛଡ଼ା ଓଡ଼ିଆ ସାହିତ୍ୟର ପ୍ରଚାର ପ୍ରସାର ଦିଗରେ ଆମେ ଶ୍ରମକାତର ହୋଇପଡୁଛୁ । ଓଡ଼ିଆ ସାହିତ୍ୟକୁ ଆନ୍ତର୍ଜାତୀୟ କ୍ଷେତ୍ରରେ ପରିଚିତ କରାଇବାର ଚେଷ୍ଟା ଆମର ଅତି ଅଳ୍ପ । ଓଡ଼ିଆ ସାହିତ୍ୟ ତୁଳନାତ୍ମକ ଦୃଷ୍ଟିରେ ନିକୃଷ୍ଟତର ବୋଲି ଧାରଣା ନେଇ ଯଦି ଆମେ ଚେଷ୍ଟାକାତର ହୋଇଥାଉ ତେବେ ତାହା ନିତାନ୍ତ ଭ୍ରମ ।

ସେଦିନ ଯୁବଲେଖକ ସମ୍ମିଳନୀରେ କେନ୍ଦୁଝର ଅଧିବେଶନରେ ଯୋଗ ଦେଇଥିବା ମନମୋହନ ଠାକୁର, ନାଭିଲ୍ ପ୍ରମୁଖ କଲିକତାବାସୀ କବିବନ୍ଧୁମାନେ ଓଡ଼ିଆ କବିତା ପାଠୋତ୍ସବ ପରେ ମୋତେ ଅକୁଣ୍ଠିତ ଭାବରେ କହିଥିଲେ ଯେ,

ଓଡ଼ିଆ ସାହିତ୍ୟ ବଙ୍ଗଳା ପ୍ରଭାବିତ ବୋଲି ସେମାନଙ୍କର ଯେଉଁ ଧାରଣା ଥିଲା ତାହା ଭ୍ରମ ବୋଲି ସେମାନେ ଏବେ ଜାଣି ପାରିଛନ୍ତି । ଉକ୍ତ ପାଠୋତ୍ସବରୁ ଏକଥା ମଧ୍ୟ ସେମାନେ ଜାଣିପାରିଲେ ଯେ, ଓଡ଼ିଆ କବିତା ନିକୃଷ୍ଟ ଧରଣର ନୁହେଁ । ଏତଦ୍‌ଭିନ୍ନ ବ୍ୟକ୍ତିଗତ ଆଳାପ ପ୍ରସଙ୍ଗରେ ମୁଁ ମଧ୍ୟ ଉକ୍ତ ଧାରଣାର ଅବାସ୍ତବତା ସମ୍ପର୍କରେ ସେମାନଙ୍କୁ ବୁଝାଇ ଦେଇଥିଲି ।

କିନ୍ତୁ ଏଭଳି ବ୍ୟକ୍ତିଗତ ଭାବରେ ଭେଟି ବାହାରେ ଆମ ସାହିତ୍ୟ ସମ୍ପର୍କରେ ସୃଷ୍ଟି ହୋଇଥିବା ଧାରଣାକୁ ବଦଳାଇବାତ ସହଜ ନୁହେଁ । ଏଥିପାଇଁ ନିରନ୍ତର ପ୍ରୟାସ କରି ବାହାରେ ଓଡ଼ିଆ ସାହିତ୍ୟକୁ ପରିଚିତ କରିବା ଦରକାର । କିନ୍ତୁ ସେଭଳି ପ୍ରୟାସ କରିବାକୁ ଖୁବ୍ କମ୍ ଲୋକ ଆଗେଇ ଆସୁଛନ୍ତି ଓ ତାହାହିଁ ଦୁଃଖ ।

ଉପରେ ଉଲ୍ଲିଖିତ ବଙ୍ଗୀୟ ଲେଖକ ମନମୋହନ ଠାକୁର ପ୍ରମୁଖ 'ସୁପର୍ଣ୍ଣା' ବୋଲି ଏକ ଅନୁଷ୍ଠାନ ଗଠନ କରିଛନ୍ତି । ସୁପର୍ଣ୍ଣା' ଆନୁକୂଲ୍ୟରେ ଇଂରାଜୀ ସମେତ ଭାରତର ୯ଟି ଭାଷାରେ ବଡ଼ ବଡ଼ ଲେଖକଙ୍କର ବହି ଏକାବେଳକେ ବାହାର କରିବା ଯୋଜନା କରିଛନ୍ତି । ସେମାନେ ଏ ଯାବତ୍ ସାତଟି ବହି ପ୍ରକାଶ କରି ସାରିଲେଣି । ଗୋଟିଏ ବହିକୁ ଏକାସାଙ୍ଗରେ ୯ଟି ଭାଷାରେ ଅନୁବାଦ କରି ପ୍ରକାଶ କରିବା ଲକ୍ଷ୍ୟ ବ୍ୟତୀତ 'ସୁପର୍ଣ୍ଣା'ର ଆଉ ଦୁଇଟି ମହାନ୍ ଲକ୍ଷ୍ୟ ରହିଛି । ଗୋଟିଏ ଲକ୍ଷ୍ୟ ହେଉଛି ପାଠକ ସଂଗ୍ରହ ଓ ଅପରଟି ଏକ ପାଣ୍ଠି ସୃଷ୍ଟି କରି ଅସହାୟ, ପୀଡ଼ିତ ଓ ଅଭାବଗ୍ରସ୍ତ ଲେଖକମାନଙ୍କୁ ସାହାଯ୍ୟ ପ୍ରଦାନ କରିବା । 'ସୁପର୍ଣ୍ଣା' ଜାତୀୟ ସ୍ୱାର୍ଥଦୃଷ୍ଟିରୁ ଏକ ମହାନ୍ ଅନୁଷ୍ଠାନ ରୂପେ ଠିଆ ହେଉ ଏହାହିଁ କାମନା ।

ଏକାବେଳେକେ ଗୋଟିଏ ଲେଖା ପୁସ୍ତିକାକୁ ବିଭିନ୍ନ ଭାଷାରେ ପ୍ରକାଶ କରିବାକୁ ସରକାରୀ ଦାୟିତ୍ୱ ବୋଲି କୃଷିସ୍ତରେ ଗ୍ରହଣ କରାଯାଇଛି ଓ ଜାତୀୟ ସଂହତି ରକ୍ଷା କରାଯାଇଛି । କିନ୍ତୁ ଆମ କଥା ଯେତେବେଳେ ଭିନ୍ନ ସେତେବେଳେ ଆମ ପନ୍ଥା ମଧ୍ୟ ଭିନ୍ନ ହେବ । ସମ୍ପ୍ରତି Voices of modern Asia ନାମକ ଏକ ପୁସ୍ତକ ପ୍ରକାଶ ପାଇଛି । ଉକ୍ତ ଗ୍ରନ୍ଥରେ ଭାରତ, ପାକିସ୍ତାନ ଓ ବଙ୍ଗଳାଦେଶରୁ ୭ଜଣ ଲେଖକଙ୍କର ଗଳ୍ପ ସ୍ଥାନ ପାଇଛି । ସି: ରାଜଗୋପାଳଚାରୀ, ପ୍ରେମଚାନ୍ଦ, ମୁଲକରାଜ ଆନନ୍ଦ, ଅମୃତା ପ୍ରୀତମ୍,

ଗୁଲାମ ଆବାସ୍ ଆବିଦଙ୍କର ଗଳ୍ପ ନିର୍ବାଚିତ ହୋଇ ପ୍ରକାଶ ପାଇଛି । ମଲୁଠାରୁ-ବଳି ଗୌରବର ବିଷୟ ଯେ, ମହାପାତ୍ର ନୀଳମଣି ସାହୁଙ୍କର "ଅନ୍ଧକାରର ସୂର୍ଯ୍ୟ" ଗଳ୍ପଟି ମଧ୍ୟ ଏହି ଛ'ଟି ଗଳ୍ପ ମଧ୍ୟରେ ସ୍ଥାନ ପାଇଛି । ଗଳ୍ପଟିକୁ ଅଧ୍ୟାପକ ସଚ୍ଚିଦାନନ୍ଦ ମୋହନ ମହାନ୍ତି ଅନୁବାଦ କରିଛନ୍ତି । ଏହା ଅନ୍ତତଃ ଏତିକି ପ୍ରମାଣିତ କରୁଛି ଯେ, ଓଡ଼ିଆ ଗଳ୍ପ ନିକୃଷ୍ଟ ଧରଣର ନୁହେଁ ଓ ଆନ୍ତର୍ଜାତୀୟ ଖ୍ୟାତି ଲାଭ କରିବାକୁ ଯୋଗ୍ୟ । ଏ ପରିପ୍ରେକ୍ଷୀରେ ଇଂରାଜୀ, ହିନ୍ଦୀ ଓ ଅନ୍ୟ ଭାଷାର ଓଡ଼ିଆ ଅଧ୍ୟାପକ, ଶିକ୍ଷକ ପ୍ରମୁଖଙ୍କୁ ଏତିକି ନିବେଦନ ଯେ, ସେମାନେ ଓଡ଼ିଆ ସାହିତ୍ୟକୁ ଅନୁବାଦ କରି ଅଣଓଡ଼ିଆ ପତ୍ରିକାରେ ପ୍ରକାଶ ପାଇଁ ପଠାଇବାକୁ ଚେଷ୍ଟା କରନ୍ତୁ । ନିଷ୍କ୍ରିୟ ହୋଇ ବସିରହିଲେ ଚଳିବ ନାହିଁ । ଏ କ୍ଷେତ୍ରରେ ଇଂରାଜୀ ଅଧ୍ୟାପକମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କାରଣ ବିଶ୍ୱଦରବାରରେ ଓଡ଼ିଆ ସାହିତ୍ୟକୁ ବଞ୍ଚାଇବାକୁ ହେଲେ ତା'ର ଇଂରାଜୀ ଅନୁବାଦ ନିତାନ୍ତ ଆବଶ୍ୟକ । ଏ କ୍ଷେତ୍ରରେ ଆମର ଇଂରାଜୀ ଅଧ୍ୟାପକମାନେ ବିଶେଷ ତତ୍ପର ନୁହନ୍ତି ଯେପରି ବଙ୍ଗଳା, ତାମିଲ୍, ତେଲଗୁ, ମାଲାୟାଲମ୍ ସାହିତ୍ୟରେ ତାଙ୍କର ଇଂରାଜୀ ଅଧ୍ୟାପକମାନେ କାର୍ଯ୍ୟ କରିଛନ୍ତି ।

ଏହା ଏକ ପବିତ୍ର ଜାତୀୟ କାର୍ଯ୍ୟ ବୋଲି ଗ୍ରହଣ କରି ଲେଖକମାନେ କାର୍ଯ୍ୟ କଲେ ସେମାନଙ୍କର କୃତି ଜାତୀୟ ଜୀବନରେ ଅବିସ୍ମରଣୀୟ ହୋଇ ରହିବ ।

## (ଛ) ନିଖିଳ ଭାରତ ଲେଖକ ସମ୍ମେଳନ

ଗତ ୨୪ ତାରିଖ ଦିନ ଦିଲ୍ଲୀଠାରେ ଅନୁଷ୍ଠିତ ହୋଇଥିବା ଭାରତୀୟ ଲେଖକମାନଙ୍କ ସମ୍ମିଳନୀରେ ଉଦ୍‌ବୋଧନ ଦେଇ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ କହିଛନ୍ତି "ଲେଖକମାନେ ଜନସାଧାରଣଙ୍କ ସଂସ୍ପର୍ଶରେ ଆସୁ ନାହାନ୍ତି । ସେମାନେ ପ୍ରୌଢ଼ ଶିକ୍ଷା ପାଇଁ କେତେଖଣ୍ଡ ବହି ଲେଖିଦେଲେ ଯେ ସେମାନେ ଜନସାଧାରଣଙ୍କ ଦୁଃଖ ଦାରିଦ୍ର୍ୟ ବିଷୟରେ ଅବଗତ ଅଛନ୍ତି ଏହା ଗ୍ରହଣ କରିବା ଠିକ୍ ନୁହେଁ । ସମାଜରେ ଯେଉଁ ଦ୍ରୁତ ପରିବର୍ତ୍ତନ ଘଟୁଛି ସେ ବିଷୟରେ ଲେଖକମାନେ ନିବିଡ଼ ଭାବେ ଅବହିତ ହେବା ଆବଶ୍ୟକ ।"

ପ୍ରଧାନମନ୍ତ୍ରୀଙ୍କର ଏ ଉକ୍ତିକୁ ସର୍ବାନ୍ତଃକରଣରେ ସ୍ୱାଗତ କରୁଛୁ । ଜଣେ ସାଧାରଣ ନାଗରିକ ଅପେକ୍ଷା ଜଣେ ଲେଖକର ଦାୟିତ୍ୱ ଯେ ଅଧିକ

ଗୁରୁତ୍ୱପୂର୍ଣ୍ଣ ଏଥିରେ ସନ୍ଦେହ ନାହିଁ । ସମାଜରେ ଯାହା ସବୁ ଘଟୁଛି ତାହା ସହିତ ପ୍ରତ୍ୟକ୍ଷ ସମ୍ପର୍କ ନ ରହିଲେ ଲେଖକ ଯାହା ଲେଖିବ ତାହା ଅନୁଭୂତ ନ ହୋଇ କଳ୍ପନା ବିଳାପ ହୋଇଯିବ । ତେଣୁ ସେପରି ଲେଖା ଅବାସ୍ତବ ହେବାକୁ ବାଧ୍ୟ ।

ସ୍ୱାଧୀନତା ପରଠାରୁ ଭାରତବର୍ଷର ବହୁ ଲେଖକ ବାକ୍ ସ୍ୱାଧୀନତା ନାମରେ ବାକ୍ ଉଚ୍ଛୃଙ୍ଖଳତାର ବ୍ୟଭିଚାରରେ ମାତିଥିଲେ । ସେହି ଲଗାମଛଡ଼ା ଲେଖକମାନଙ୍କୁ ସଂଯତ କରିବାପାଇଁ ସଂବିଧାନରେ ୧୯ ଧାରା ବାତିଲ ହୋଇଛି । ସମାଜର ଅନ୍ୟସ୍ତର ଲୋକଙ୍କ ଅପେକ୍ଷା ଲେଖକମାନଙ୍କ ପାଇଁ ଏହା ଏକ ସତର୍କ ଘଣ୍ଟି ।

ବ୍ୟକ୍ତିଗତ ସ୍ୱାଧୀନତା ଓ ସାମୂହିକ ସ୍ୱାଧୀନତା ପରସ୍ପରର ପରିପନ୍ଥୀ ନୁହେଁ । ସାମୂହିକ ସ୍ୱାଧୀନତା ବା ଉନ୍ନତି ପାଇଁ ବ୍ୟକ୍ତିଗତ ସ୍ୱାଧୀନତା ବା ସ୍ୱାର୍ଥ ସର୍ବାଦୌ ତ୍ୟାଜ୍ୟ । ଆମର ଲୋକପ୍ରିୟ ସରକାର ଦେଶକୁ ସମାଜବାଦୀ ଢାଞ୍ଚାରେ ଗଢ଼ିବାକୁ ଚେଷ୍ଟା କଲାବେଳେ କେତେକ ସାହିତ୍ୟିକ ନିଜର ସାମାଜିକ ଦାୟିତ୍ୱବୋଧ ସଂପର୍କରେ ଅନବହିତ ରହି ସମାଜବାଦ ବିରୋଧୀ ଲେଖା ଲେଖିବାରେ ବ୍ୟସ୍ତ ।

ଏକଥା କ'ଣ ସତ ନୁହେଁ କି, ବାକ୍ ସ୍ୱାଧୀନତା ପାଇ ଦଳେ ଲୋକ ଏମିତି କଥା ଲେଖି, ଛପାଇ, ବିକାଇ ପଇସା ରୋଜଗାର କରୁଥିଲେ ଯାହା ସମାଜ ବିରୋଧୀ ଥିଲା । ଛତୁ ଫୁଟିଲା ପରି ଏପରି କେତେକ ପତ୍ରିକା ବାହାରୁଥିଲା ଯେଉଁ ସବୁରେ କେବଳ ଯୌନ କାତରତା ପ୍ରକାଶ କରାଯାଉଥିଲା । ମଣିଷର ପାଶବିକତା ସତ୍ୟ ହେଲେ ହେଁ, ସନାତନ ସତ୍ୟ ହେଉଛି ଉକ୍ତ ପାଶବିକତାକୁ ଦମନ କରି ମାନବିକତାକୁ ପ୍ରତିଷ୍ଠା କରିବା । କେତେ ଗ୍ରନ୍ଥକ କେତେ ଆଉଡ଼ିଭାଇଜର ସବୁ ଅଗ୍ରତରେ ବାହାର କେତେକ ଅବୈଧ ପ୍ରଣୟକୁ ସାହିତ୍ୟିକ ଗୌରବ ପ୍ରଦାନ କରିବାର ଅପଚେଷ୍ଟା ଆପଣ ଦେଖି ନାହାନ୍ତି କି ? ସାମାଜିକ ସ୍ୱାର୍ଥ ବିରୋଧୀ ବ୍ୟକ୍ତିଗତ ବିବାହପୂର୍ବ ଔପନ୍ୟାସିକ ନଗ୍ନ ପ୍ରଣୟ କାହାଣୀ ଲେଖିବାର ଦୁର୍ଦ୍ଦମ ଆଗ୍ରହ କେତେକ ଲେଖକଙ୍କର ଯୁବକ ସୁଲଭ କୁତୁହଳ ନୁହେଁ କି ? ପଚାରନ୍ତୁ ବାକ୍ ସ୍ୱାଧୀନତା ନାମରେ ଏସବୁ କାମ୍ୟ କି ?

ଦାରିଦ୍ର୍ୟର ସୀମାରେଖା ତଳେ ପଡ଼ୁଥିବା ଅସଂଖ୍ୟ ମଣିଷ ଜୀବନର ଆଲେଖ୍ୟ ଆଜି କେତେ ଜଣ ଲେଖକଙ୍କର ଲେଖାରେ ଦେଖିବାକୁ ମିଳୁଛି ? ସମାଜବାଦୀ ଢାଞ୍ଚାରେ ଯେତେବେଳେ ଭାରତୀୟ ସମାଜ ଗଠିତ ହେବାକୁ ଯାଉଛି ସେଥିରେ ନାନା ପ୍ରତିବନ୍ଧକ ସୃଷ୍ଟି ହେବା ସ୍ୱାଭାବିକ । ସେହି ସବୁ ପ୍ରତିବନ୍ଧକକୁ ଭାଙ୍ଗି ତୁଟି ମାଡ଼ିମକଚି ପରିବର୍ତ୍ତନର ରଥଚକ୍ର ଆଗେଇ ଚାଲିଛି ।

ସାମାଜିକ ପରିବର୍ତ୍ତନର ଏ ଯେଉଁ ନୂତନ ଚିତ୍ର ତାହା ଆଜି ସାହିତ୍ୟରେ ପ୍ରତିଫଳିତ ହେବା ଆବଶ୍ୟକ । ସମାଜ ଗଠନରେ ଲେଖକର ଦାୟିତ୍ୱ ଯେ ସବୁଠାରୁ ଅଧିକ ଏକଥା କେହି ଅସ୍ୱୀକାର କରିବେ ନାହିଁ ।

## (ଜ) ଭାରତୀୟ ଶିକ୍ଷା ବ୍ୟବସ୍ଥା

ଏବେ ନିକଟରେ କଟକରେ ୫୩ତମ ନିଖିଳ ଭାରତ ଶିକ୍ଷା ସମ୍ମିଳନୀ ଅନୁଷ୍ଠିତ ହୋଇଯାଇଅଛି । ଏହି ସମ୍ମିଳନୀରେ ଭାରତର ବିଭିନ୍ନ ପ୍ରାନ୍ତରୁ ପ୍ରାୟ ତିନି ହଜାର ପ୍ରତିନିଧି ଯୋଗ ଦେଇଥିଲେ । ଏହି ସମ୍ମିଳନୀରେ ଭାରତର ବିଶିଷ୍ଟ ଶିକ୍ଷାବିତ୍‌ମାନେ ଭାଷଣ ପ୍ରସଙ୍ଗରେ ଉଲ୍ଲେଖ କରିଥିଲେ ଯେ ବର୍ତ୍ତମାନ ଦେଶରେ ଯେଉଁ ଶିକ୍ଷା ପଦ୍ଧତି ପ୍ରଚଳିତ ହେଉଛି ତାହାଦ୍ୱାରା ସମାଜରେ ଦୁଇଟି ଶ୍ରେଣୀ ସୃଷ୍ଟି କରାଯାଉଛି । ଏକ ଜ୍ଞାନ ଆହରଣକାରୀ କର୍ମଶୀଳ ସମାଜ ଗଠନ ଦିଗରେ ଆଜିର ଶିକ୍ଷା ପଦ୍ଧତି ଯେ ଅନୁକୂଳ ନୁହେଁ, ଏକଥା ସମସ୍ତେ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି । ଦେଶ ସ୍ୱାଧୀନ ହେବାର ଦୀର୍ଘ ୩୦ ବର୍ଷ ମଧ୍ୟରେ ଆମର ଶିକ୍ଷା ବ୍ୟବସ୍ଥା ଦେଶପ୍ରେମୀ ବ୍ୟକ୍ତି ସୃଷ୍ଟି କରିବା ପରିବର୍ତ୍ତେ ଆତ୍ମକୈନ୍ଦ୍ରିକ ବ୍ୟକ୍ତିସ୍ୱାର୍ଥ-ସର୍ବସ୍ୱ ବ୍ୟକ୍ତି ସୃଷ୍ଟି କରିଛି । ଏହି ବ୍ୟବସ୍ଥା ଫଳରେ ଶିକ୍ଷିତ ସମାଜ ଦେଶର ସାଧାରଣ ଲୋକଙ୍କଠାରୁ ଦୂରେଇ ଯାଉଛି ଏବଂ ଦେଶର ସ୍ୱାର୍ଥକୁ ସଂପୂର୍ଣ୍ଣଭାବେ ଭୁଲି ଯାଉଛି । ବର୍ତ୍ତମାନ ଦୁଇପ୍ରକାର ଶିକ୍ଷା ପଦ୍ଧତି ପ୍ରଚଳିତ ହେଉଛି । ଥିଲାବାଲା ବା ଧନିକ ଗୋଷ୍ଠିଙ୍କ ପାଇଁ କନଭେଣ୍ଟ ସ୍କୁଲ୍, ନଥିଲାବାଲା ଦରିଦ୍ର ଶ୍ରେଣୀଙ୍କ ପାଇଁ ସାଧାରଣ ସ୍କୁଲ । ଏହି ସାଧାରଣ ସ୍କୁଲଗୁଡ଼ିକ ସରକାରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପରିଚାଳିତ ହେଲେ ମଧ୍ୟ ଏଗୁଡ଼ିକର ଅବ୍ୟବସ୍ଥା କ୍ରମେ ବଢ଼ି ବଢ଼ି ଚାଲିଛି ଏବଂ ଶିକ୍ଷାଦାନର ମାନ ଅତ୍ୟନ୍ତ ନିମ୍ନସ୍ତରକୁ ଚାଲିଯାଇଛି । ଗୋଟିଏ ବାଳକ ଯେଉଁ ପ୍ରକାର ଶିକ୍ଷାପାଇଲେ ତା'ର ମାନସିକ ବୃଦ୍ଧି ବିକଶିତ

ହୁଅନ୍ତା ଏବଂ ସେ ଶିକ୍ଷା ପ୍ରତି ଆଗ୍ରହୀ ହୁଅନ୍ତା, ସେ ପ୍ରକାର ଶିକ୍ଷା ଆମର ଦିଆଯାଉ ନାହିଁ । ଯାହାଫଳରେ ବାଳକ ବାଳିକାମାନେ ନିମ୍ନ ପ୍ରାଇମେରୀ ସ୍କୁଲରୁ ଶିକ୍ଷାପ୍ରତି ବିମୁଖ ହୋଇ ପଡ଼ୁଛନ୍ତି । ଦ୍ୱିତୀୟତଃ ଶିକ୍ଷାକୁ ଅତ୍ୟନ୍ତ ବ୍ୟୟବହୁଳ କରାଯାଉଛି । ଥିଲାବାଲା ଲୋକମାନେ ସହରରେ ରହି ତାଙ୍କ ପିଲାଙ୍କୁ ପବ୍ଲିକ ସ୍କୁଲରେ ପଢ଼ାଇ ବାବୁଶ୍ରେଣୀ ସୃଷ୍ଟି କରୁଛନ୍ତି, ନଥିଲାବାଲା ଲୋକେ ବ୍ୟୟବହୁଳ ଶିକ୍ଷାରୁ ବଞ୍ଚିତ ହୋଇ ଶ୍ରମିକ ଶ୍ରେଣୀରେ ରହିବାକୁ ବାଧ୍ୟ ହେଉଛନ୍ତି । ବର୍ତ୍ତମାନ ଦେଶରେ ତଥାକଥିତ ବାବୁ ଶ୍ରେଣୀର ଲୋକେ ସମସ୍ତ ସୁବିଧା ସୁଯୋଗ ଉପଭୋଗ କରୁଥିବା ବେଳେ ଦେଶର ଅଗଣିତ ଜନସାଧାରଣ ନାନା ଦୁଃଖ କଷ୍ଟରେ ଜୀବନଯାପନ କରୁଛନ୍ତି । ଏହି ପଦ୍ଧତି ବେଶୀ ଦିନ ଚାଲିଲେ ସମାଜ ଭିତରେ ଏକ ବିରାଟ ପାର୍ଥକ୍ୟ ସୃଷ୍ଟି ହେବ ।

ଦେଶରେ ବାରମ୍ବାର ନାନା ଶିକ୍ଷା କମିଶନ ବସାଯାଇ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରାଯାଉ ଥିଲେ ମଧ୍ୟ କମିଶନମାନଙ୍କର ସୁପାରିଶ ସବୁକୁ ସରକାର ଗ୍ରହଣ କରୁନାହାନ୍ତି ।

ତେବେ ବର୍ତ୍ତମାନ ମଧ୍ୟ ବେଳ ଅଛି; ସ୍ୱାଧୀନ ଭାରତରେ ଏକପ୍ରକାର ଶିକ୍ଷା ପଦ୍ଧତି ପ୍ରଚଳନ ପାଇଁ ସମସ୍ତ ପ୍ରକାର ଉଦ୍ୟମ ହେଉ । ଏକ ବୈଷମ୍ୟହୀନ ସମାଜ ଗଠନ ଦିଗରେ ଶିକ୍ଷା ବ୍ୟବସ୍ଥା ମୂଳଭିତ୍ତି ପକାଉ ।



# କବିତା : ୧୯୭୦

କବିତା ପରିବର୍ତ୍ତନଶୀଳ । ଯୁଗର ପରିବର୍ତ୍ତନରେ କବିତାର ପରିବର୍ତ୍ତନ ଅବଶ୍ୟମ୍ଭାବୀ କାରଣ "ଅପରିବର୍ତ୍ତନୀୟତାର ଅର୍ଥ ହୁଏତ ପୂର୍ଣ୍ଣତା ବା ମୃତ୍ୟୁ" (ବିଶ୍ୱନାଥ କର) । ଏଇ ସିଦ୍ଧାନ୍ତକୁ ସତ୍ୟରେ ପରିଣତ କରି କବିତାର ପରିବର୍ତ୍ତନ ହୋଇଛି ଏବଂ ହେବ ମଧ୍ୟ; କିନ୍ତୁ କବିତାର ନିଜର ଏକ ଗତିପଥ ରହିଛି । ପ୍ରାଚୀନ ବୈଦିକ ଋଷି କଣ୍ଠରୁ କବିତା ନିଃସୃତ ହୋଇଛି । ଧାର୍ମିକ ପ୍ରଚାରକଙ୍କ ଲେଖାମାନରେ କବିତା ରୂପ ପାଇଛି । କାବ୍ୟକାର କାବ୍ୟର ସର୍ଜ୍ଜନା କରିଛି । ଆଜି ମଧ୍ୟ କବି ବଞ୍ଚିଛି, କବିତାର ସୃଷ୍ଟି ମଧ୍ୟ ହେଉଛି । ସବୁ ଯୁଗରେ କବିତାର ସର୍ଜ୍ଜନା ନିମିତ୍ତ ପ୍ରେରଣା ରହିଛି, ଏହି ପ୍ରେରଣା ଆଧିଦୈବିକ, ଆଧ୍ୟାତ୍ମିକ ବା ଆଧିଭୌତିକ । ହୁଏତ ବୈଦିକ ଋଷି ନିଜ କବିତାର ପ୍ରେରଣା ବିଷୟରେ ଇଙ୍ଗିତ ଦେଇ କହିଛି—"ଚିରସ୍ରୁତ ଆନନ୍ଦ ପ୍ରବାହ ପରି ମୋର ସଙ୍ଗୀତ ବୃହସ୍ପତିଙ୍କ ନିକଟରେ ଯାଇ ଧ୍ୱନିତ ହେଉଛି" (ଋକ୍‌ବେଦ) ବା "ହେ ଆଲୋକର ଦେବଗଣ ! ମଧୂନାଦରେ ମୋତେ ପୂର୍ଣ୍ଣ କରିଅ ଯାହା ଫଳରେ ମୁଁ ମହିମାମୟ ଶବ୍ଦ ସର୍ବସାଧାରଣଙ୍କ ନିକଟରେ ଉଚ୍ଚାରଣ କରିବି" (ଅଥର୍ବ ବେଦ) ବା Shakespearଙ୍କ "Mid Summer night's Dream"ରେ ଥିସିୟସ୍ କହିଛି:—

"The Lunatic, the Lover & the Poet
Are of imagination all compact.

One sees more Devils than vast hell can hold,
That is the madman, the Lover all as frantic.
Sees all Helen's beauty in a brow of Egypt.
The poet's eye in a fine frenzy rolling
Doth glance from heaven to earth and from earth
to heaven, And imagination bodies forth.
The forms of things unknown, the poet's pen,
Turn them to shapes and gives to airy nothing
A local habitation and a name."

ଏହା ମାତ୍ର ନାଟକୀୟ ଉକ୍ତି ନୁହେଁ, କବିର ଦିବ୍ୟୋନ୍ମାଦ ସମ୍ବନ୍ଧରେ ! ସେକସପିୟରଙ୍କର ସୁଚିନ୍ତିତ ମନ୍ତବ୍ୟ । ସେହିପରି ସେଲୀ କହିଛନ୍ତି :-

Poetry is indeed something divine.........
A man cannot say " I will compose poetry ."
The greatest poet cannot even say this, for the mind in creation is as a fading coal, which some invisible influence. Like an inconstant wind, awakens to transitory brightness, this power arises from within — and conscious portions of our natures are unprophetic either of its departure. ( A Defence of poetry ). ଏଲିଅଟ ମଧ୍ୟ ' Leadence running in my mind............" ବୋଲି କହିଛନ୍ତି ।

କବିତାର ଏଇ ପ୍ରେରଣା ଅବଧି ରହସ୍ୟମୟ । ଏହା ସ୍ୱପ୍ନ ବା କଳ୍ପନା ବା ଦୈବୀ ପ୍ରେରଣା ଯାହା ହେଉନା କାହିଁକି କବିତାର ସୃଷ୍ଟି ଆଗାମୀ ବହୁଯୁଗ ପାଇଁ । ବୈଦିକ କବିତାର ଋଷି ମଧ୍ୟ ଏହା ଉପଲବ୍ଧି କରି ଗାଇଥିଲେ "ହେ ଗାୟକ ଭୁଲ ନାହିଁ, ତୁମର ଏଇ ବାଣୀ ଉତ୍ତର ଯୁଗରେ ମଧ୍ୟ ଅନୁରଣିତ ହେବ ।" କବିତା ସେଇଥିପାଇଁ ଆଗାମୀ ଯୁଗର, ଆଗାମୀ ସମୟର । କେବଳ ବର୍ତ୍ତମାନ ସମୟ ପାଇଁ

ଏହା ଉଚ୍ଛିଷ୍ଟ ନୁହେଁ । ତେଣୁ ଆଜି ଆମେ ଯାହାକୁ କବିତା ବୋଲି ଗ୍ରହଣ କରିବା ତାହା କବିତା ପର୍ଯ୍ୟାୟବାଚୀ ହେବା ବିଧେୟ ।

କବିତା ଛନ୍ଦୋବଦ୍ଧ ବାକ୍ୟ ନୁହେଁ । ଛନ୍ଦ ଶବ୍ଦ ସମୂହର ସଂଯୋଜକ ମାତ୍ର । ଏ ଶବ୍ଦାବଳୀ ଅର୍ଥ ସମନ୍ୱିତ ହେବା ଉଚିତ । ଭାବ ଏବଂ ଭାଷାର ମିଳନହିଁ କବିତା କହିଲେ ଚଳିବ ନାହିଁ । ଭାବ ଏବଂ ଭାଷା ଉଭୟ ସୁନ୍ଦର ହେବା ଉଚିତ । ସେଥିପାଇଁ ଅଳଙ୍କାର, ପ୍ରତୀକ ଓ ଚିତ୍ରକଳ୍ପର ଆବଶ୍ୟକତା ରହିଛି; କିନ୍ତୁ ତାହା ଗୁରୁତ୍ୱପୂର୍ଣ୍ଣ ନୁହେଁ କାରଣ ଏ ସମସ୍ତର ଅନୁପସ୍ଥିତିରେ ମଧ୍ୟ କବିତାର ସୌନ୍ଦର୍ଯ୍ୟ ପ୍ରକାଶ ପାଇପାରେ । ଆନନ୍ଦର ଉପଲବ୍ଧିହିଁ କବିତାର ଲକ୍ଷ୍ୟ ଓ କାରଣ । ଏଥିପାଇଁ କବିତାର ଭାଷା ବା ରୂପ କବିର ଭାବକୁ ସମଭାବାପନ୍ନ କରି ଅନ୍ୟମାନଙ୍କ ମନରେ ବ୍ୟଞ୍ଜନା ସୃଷ୍ଟି କରେ । ଅନ୍ୟ ପକ୍ଷରେ କବିର ଭାବ ନୀତିକ ସମାଜର ଚିତ୍ର ନୁହେଁ । ବୈରାଗୀର ମୋକ୍ଷ କାମନାର ଆତୁରତା ନୁହେଁ । ମାର୍କ୍ସବାଦର ମାର୍କ୍ସ ଉପଦେଶ ନୁହେଁ । କାହ୍ନୁ ପାଙ୍କର ଡୋମ୍ବିକୁ ନୈରାତ୍ମ୍ୟ ଦେବୀର ପ୍ରତୀକରୂପେ ଗ୍ରହଣ କରିଥିବା ବର୍ଣ୍ଣନା ନୁହେଁ, ଲାବଣ୍ୟବତୀର ବେଶ ବର୍ଣ୍ଣନା କିମ୍ବା ବିଦଗ୍ଧ କବି ଅଭିମନ୍ୟୁଙ୍କର ଚମ୍ପକୀ ବର୍ଣ୍ଣନା ନୁହେଁ । ଯଥାର୍ଥ କବି ମନର ବାଙ୍ମୟ ଆତ୍ମ-ପ୍ରକାଶହିଁ କବିତା ନୁହେଁ । ତହିଁରେ ଅନୁଭୂତିର ଗଭୀରତା ରହିବା ଆବଶ୍ୟକ । ଏକ ବ୍ୟାପକତା ରହିବା ଆବଶ୍ୟକ । "କବି ମନର ତେଜ, ଭାବନାର ଶିହରଣ-ରୋମାଞ୍ଚ ଏବଂ ଆବିଷ୍କାରହିଁ କବିତା ।" ରସାସ୍ୱାଦକର ସକ୍ଷମ ଅନୁଭୂତିର ସଂକେତର ସାମର୍ଥ୍ୟରେ କବିତାର ସାର୍ଥକତା ।

ଉପରେ କୁହା ଯାଇଥିବା ସିଦ୍ଧାନ୍ତାନୁଯାୟୀ ସବୁ ଯୁଗର ସାହିତ୍ୟର ଆଲୋଚନା କରାଯାଇଛି । ଆଜିର କବିତା ମଧ୍ୟ ସେଇ ଭିତ୍ତିରେ ଆଲୋଚିତ ହେବ । ଆଜିର କବିତା ଭାବ ଓ ରୂପରେ ପରିବର୍ତ୍ତିତ । ଆଜିର ସମୟ, ଆଜିର ସଂସ୍କୃତିହିଁ ଆଜିର କବିର ଅନୁଭୂତି । ଆଜିର କବିତା କିନ୍ତୁ କିଛିଟା ଅଲଗା, କିଛିଟା ଫରକ ।

ଓଡ଼ିଆ କବିତାରେ ଶୀଘ୍ର ଶୀଘ୍ର ପରିବର୍ତ୍ତନ ହୋଇଛି । ୧୯୫୦ ମସିହା-ପରଠାରୁ ଓଡ଼ିଆ କବିତା ତଥାକଥିତ ଆନ୍ତର୍ଜାତୀୟ ପ୍ରତିଯୋଗିତାରେ ଯୋଗ ଦେଇଛି । ୧୯୩୦ ରୁ ୧୯୪୦ ଭିତରେ ହୋଇଥିବା ପରିବର୍ତ୍ତନର ସମୟରେ ଓଡ଼ିଆ କବିତା ନିଜକୁ ପ୍ରସ୍ତୁତ କରିନେଇଛି । ପାଶ୍ଚାତ୍ୟ ସାହିତ୍ୟରେ ଘଟିଥିବା ପରିବର୍ତ୍ତନକୁ ଗ୍ରହଣ କରି ନେଇଛି । ପ୍ରାକ୍-କାଳରେ ଓଡ଼ିଆ ସାହିତ୍ୟ ପାଶ୍ଚାତ୍ୟ

ସାହିତ୍ୟର ପୂର୍ବତନତାକୁ ହିଁ ପରୀକ୍ଷା କରନ୍ତି, ପ୍ରୟୋଗ କରନ୍ତି । ସେହି ପରୀକ୍ଷା କିନ୍ତୁ ଆଜିଯାଏ ଚାଲିଛି, ଯାହା ମସ୍ତବଡ଼ ଭୁଲ । ପାଶ୍ଚାତ୍ୟ ସାଂସ୍କୃତିକ ପରିବର୍ତ୍ତନର ସ୍ଲୋଗାନକୁ ଆମେ ଆଦରି ନେଇଛୁ । ଫଳରେ ଏତତ ପରିବର୍ତ୍ତନ ( ପାଶ୍ଚାତ୍ୟ, ସାହିତ୍ୟର ବିବର୍ତ୍ତନ ) ଆମ ସାହିତ୍ୟରେ ଆକସ୍ମିକ, ବୈପ୍ଳବିକ । ପରିଣାମରେ ପାଠକର ଚିନ୍ତାଧାରା ଏବଂ କବିର ଚିନ୍ତାଧାରା ମଧ୍ୟରେ ସମାନ ବ୍ୟବଧାନ ରହିପାରୁ ନାହିଁ ଯଦିଓ ଏକଇ ମାଧ୍ୟମ Teachers and Newspapers ଦ୍ୱାରା ଉଭୟ ଗୋଷ୍ଠି ଶିକ୍ଷିତ ( Yeats ) ଅନ୍ୟ ଦିଗରେ କବି ଗୋଟିଏ ନିର୍ଦ୍ଦିଷ୍ଟ ଦିଗରେ ପଠନ ଓ ମନନ କରୁଥିବାରୁ ( ସମସାମୟିକ ସାହିତ୍ୟ ) ପାଠକର ଚିନ୍ତାଧାରା ସହି ହୁଏତ ଏକ ଅହେତୁକ ବ୍ୟବଧାନ ସୃଷ୍ଟି କରିଯାଉଛି । ସେଇଥିପାଇଁ କବିତାକୁ ସହଜରେ ଗ୍ରହଣ କରି ହେଉନି ବା କବିତା କେଉଁଠି ଏକାନ୍ତ ଅପରିଚିତ ହୋଇ-ପଡ଼ୁଛି, ଫଳରେ ଅବୋଧ, ଅନନୁଭୂତ ଓ ଅନାସ୍ୱାଦିତ ହୋଇ ପଡ଼ୁଛି ।

ଅନ୍ୟ ପକ୍ଷରେ ଆମ ସମାଜରେ ଯାହା ପରିବର୍ତ୍ତନ ହେଉଛି ତାହା କବିତାରେ ରହୁନି । ଆଜିର ବହୁ ସମସ୍ୟାର ଯୁଗରେ ବି ପାଠକ ସେଇ ପ୍ରାକ୍ତନ ସ୍ୱପ୍ନ, ଆଶା ଆକାଙ୍କ୍ଷାକୁ ଓ ଆନନ୍ଦକୁ ନେଇ ବଞ୍ଚି ରହିଛି । ସମାଜର ଯେଉଁ ଘଟଣାକୁ ମୂଲ୍ୟବୋଧ ବିରୁଦ୍ଧରେ ବିପ୍ଳବ ବୋଲି କବିମାନେ କହୁଛନ୍ତି ତାହା ପ୍ରକୃତରେ ବିପ୍ଳବ ନୁହେଁ, ସାମାନ୍ୟ ପଳାୟନ ମାତ୍ର । ଆଜି ଆମର ଅଭିଯୋଗ ନାହିଁ, ବିପ୍ଳବ କରିବା କପରି ? ପ୍ରାକ୍ତନ ଆଶା ଆଉ ଆନନ୍ଦ ଓ ସ୍ୱପ୍ନରେ ବିଭୋର ହେଲୁ ଗୁଡ଼ କପି କରୁଛି ପରୀକ୍ଷାରେ, ସରକାରୀ କର୍ମଚାରୀ ଅର୍ଥ ତୋଷରପାତ କରୁଛି ଇତ୍ୟାଦି । ଏ ପରିବେଶରେ କବିଙ୍କ ପକ୍ଷରେ ବଞ୍ଚିବା କପରି ପାପ ପରି ହେଲା ତା ପାଠକ କଳ୍ପନାଇ କରିପାରୁନି । ରମାକାନ୍ତ ରଥଙ୍କର 'ଅନନ୍ତ ଶୟନ' ବରଂ କବିର କବିତ୍ୱ ଉପରେ ପ୍ରଶ୍ନ ତୋଳୁଛି । ଆଜି ଯେଉଁଠି ବଗିଚାଟିଏ ମିଳେନା, ( ରହିବାକୁ ମୁଣ୍ଡପିଛା ୧୦ ଫୁଟ ଜାଗାଇ ମିଳେନା ) ସେଠି ବର୍ଷା ପରେ ପରେ ବଗିଚାରେ ବସି ଘାସ ମାନଙ୍କର ପାଣି ଚୁମିବାର ଶବ୍ଦର" ଅନୁଭୂତ କଳ୍ପନାଇ କରାଯାଏନା ( ସୀତାକାନ୍ତ ମହାପାତ୍ରଙ୍କର ) । ଯେଉଁଠି ଆମେ ଚେରିଡା ଚେରିଡ଼ୀ କରି ତରଭୁଜ କାଟୁ ସେଠି " ଅଧା କଟା ତରଭୁଜ" ( ପ୍ରମୋଦ ମହାନ୍ତିଙ୍କର ) କହିଲେ ବି' ଗଡ଼ ହୋଇଥିବା ତରଭୁଜ ବୋଲି ବୁଝିବା ଦୁଷ୍କର ।

ଆଜିର କବିତାର ପାଠକ ନିଶ୍ଚୟ ଶିକ୍ଷିତ । ସାଙ୍ଗୀତିକତା ତଥା ଗାଳ୍ପିକତାର ଅଭାବରେ ପାଠକ ସଂଖ୍ୟା ସୀମିତ । କବିତା ଆଜି କେବଳ

ସେଇମାନେ ପତ୍ରାନ୍ତ ଯେଉଁମାନେ ଧନୀ ବା ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀସମ୍ଭୂତ ବା ପ୍ରଭାବିତ । ଆମର ଅର୍ଥକୈନ୍ଦ୍ରିକ ସମାଜହିଁ ଏହାର କାରଣ । ଏ ଶ୍ରେଣୀର ପାଠକମାନେ ନିଜର ବା ନିଜ ଶ୍ରେଣୀର ଉନ୍ନତିର ସ୍ୱପ୍ନରେ ବିଭୋର । ନିଜ ଆବଶ୍ୟକତାର ପୂରଣରେ ସନ୍ତୁଷ୍ଟ । ବାସ୍ତବତାର କାରୁଣ୍ୟ ପ୍ରତି ନିର୍ବିକାର, କବି ମଧ୍ୟ ଠିକ୍ ସେହି ଅବସ୍ଥାରେ । ମନୁଷ୍ୟ ହିସାବରେ ଅନ୍ୟାନ୍ୟ ନୈରାଶ୍ୟାଦି କେବଳ ଆଜିର କବିତାରେ ନୁହେଁ ପ୍ରାଚୀନ ଯୁଗରେ ମଧ୍ୟ ଥିଲା ବରଂ ପୂର୍ବକାଳରେ ସେ କାରୁଣ୍ୟକୁ ଆଜିର ସାହିତ୍ୟରେ ଖୋଜିଲେ ନିରାଶ ହେବାକୁ ପଡ଼ିବ । ପ୍ରିୟଜନର ମୃତ୍ୟୁ ବିରହ ଦୁଃଖର ବିବିକ୍ତ ବେଦନାରେ ଜର୍ଜରିତ ପ୍ରାଣର ଅନୁଭୂତି ଅତି ପରିଚିତ ହୋଇଥିବାରୁ ନୂତନ ସାହିତ୍ୟର ଏ ଦିଗ ( ଯଦି ଥାଏ ) ପ୍ରତି ପାଠକ ଅନାକୃଷ୍ଟ । ହୁଏତ ଜୀବନର ମୂଲ୍ୟବୋଧରେ ପରିବର୍ତ୍ତନ ହୋଇଛି କିନ୍ତୁ ମାନବିକ ଅନୁଭୂତି ସ୍ପର୍ଶକାତର ହୋଇ ଯାଇ ନାହିଁ । ଯୁଦ୍ଧର ବିଭୀଷିକାର କାହାଣୀ ଶୁଣି ଶୁଣି ଏକ ନିର୍ଦ୍ଦିଷ୍ଟ ବିକଳ ଭୟଂକର କାରୁଣ୍ୟର ଚିତ୍ର ପାଠକ ଆଂକିଛି କିନ୍ତୁ ସବୁଥିରେ ଅଛି ଦୂରଦର୍ଶନର ଭାବ, ଆନ୍ତରିକତାର ଅଭାବ । ନିକଟରୁ ସନ୍ଦର୍ଶନର ଅବକାଶ ନାହିଁ ।

ବମ୍ବେର ଘରଭଡ଼ା ସମସ୍ୟା, ଯୁଦ୍ଧୋତ୍ତର ଇଂରେଜ ନାରୀର ଯୌନକ୍ଷୁଧା, ଶିଳ୍ପ ବିପ୍ଳବର ଅତି ଗୁରୁତର ଦୁରବସ୍ଥା, ହିରୋସୀମାରେ ବୋମା ବର୍ଷଣ, ସାଇଗନର ଛାତରେ ମୁହୁର୍ମୁହୁ ସାଇରେନ୍ କମ୍ପନ, ଆମେରିକାର ବେକାର ସମସ୍ୟା, ବେଲ୍‌ଫାଷ୍ଟର ସାମ୍ପ୍ରଦାୟିକ ଦଙ୍ଗାହାଙ୍ଗାମା ପ୍ରତି ପ୍ରତ୍ୟକ୍ଷ ଅନୁଭୂତି ନାହିଁ । କାରଣ ଏଠି ଅତି ବଡ ସହର ନାହିଁ । ଯୁଦ୍ଧକୁ ଯିବାର ବାଧ ବାଧକତା ନାହିଁ । ମାତ୍ର ପାଞ୍ଚ ଛ'ଟା ଶିଳ୍ପାନୁଷ୍ଠାନ ରହିଛି ( ଯଦିଓ ଶିଳ୍ପ ବିପ୍ଳବ ଉଦ୍ଭୂତ ବହୁ ପଦାର୍ଥ ଆମେ ବ୍ୟବହାର କରୁ କେବଳ ସୁଖ ସୁବିଧା ନିମିତ୍ତ ) । ଆମର ବଂଶବାର ମୋହ ଖୁବ୍ ବେଶୀ, ଆଶା ପ୍ରଚୁର । ଯାହାର ଜୀବନର ମୂଲ୍ୟବୋଧ ଅତି କରୁଣ ତଥା ନିର୍ମମ ଭାବରେ ବଦଳିଛି ସେ କବିତା ପଢ଼ିନାକି ଶୁଣେନା । କିନ୍ତୁ ଯିଏ ପଢେ ସେ ସ୍ଥବିର, ପଙ୍ଗୁ ଓ ଶିଥିଳ ବା ସ୍ୱାର୍ଥପର, ସୁବିଧାବାଦୀ ଓ ସତତ କର୍ମରତ । ତା ତୁଳନାରେ ନୈରାଶ୍ୟ ତା ପକ୍ଷରେ ସାମାନ୍ୟ, ହେୟ, ଅକଳ୍ପନୀୟକର । ତେଣୁ ହୁଏତ କେଉଁଠି ତାର କ୍ଷୋଭ ଓ କ୍ରୋଧ ଆସେ କିନ୍ତୁ ବୈରାଗ୍ୟ ନୁହେଁ । ସେଇଥିପାଇଁ ତା'ର ଭାବ ସହ ସମାନ ଭାବଧାରାକୁ ଗ୍ରହଣ କରିବାରେ ଟିକିଏ ପଶ୍ଚାତ୍‌ପଦ ହୁଏ ନାହିଁ । ସେ ସେଇ ଭାବମାନଂକୁ ଗ୍ରହଣ କରେ ଆଦର ସହ, ଯେଉଁଭଳି—

୧ । ନବଭ୍ର ପାପର ପାହାଡ଼ ତୁମେ ଅନ୍ଧକାରର ଜନ୍ମଦାତା
ସ୍ୱାଧୀନ ଯୁଗର ସୂର୍ଯ୍ୟ ସେ ଯେ ତୁମରି ସେ ପାଖେ ବୁଡ଼ିଲା ପରା
ତୁମରି ପାପର ବୃନ୍ଦାପୂଣ କେତେ ଯେ ବର୍ଷ ଭୋଗିବା ହେଲା
ମହାମାନବର ଏ ମହାଦେଶେ ମହାଦାନବର ଚାଲିଛି ଲୀଳା ।
(ଗୋଦାବରୀଶ ମହାପାତ୍ର)

୨ । ସାଧୁଆ ବକୁଛି ସାଧୁର ମଲମ ଦେଖ
ମଦୁଆ ଧରିଛି ନିଶା ନିବାରଣ ବାନା
ଗଣିକା ସାଜିଛି ବେଶ୍ୟାବୃତ୍ତି ନିରୋଧ ନେତ୍ରୀ
ସ୍ୱାଧୀନତା ଭଲ୍ ପଛକୁ ଅନାରେ ଅନା । (ରବି ସିଂ)

୩ । ଆଇନର ସେଇ ପାଇନ୍ ବନରେ ସଦା ତୁଷାରର ଝଡ଼ । ଆହ୍ୱାକୁ ଗ୍ରହଣ କରି ନିଆଯାଇଛି । (ଏଜନ)

ପାଶ୍ଚାତ୍ୟ ଜୀବନ ଦର୍ଶନ ଆମ କବିତାରେ ଆଜି ଅଧିକ ପରିମାଣରେ ପ୍ରବୃତ୍ତ । ବୁଭୁକ୍ଷିତର "ସର୍ବହରାର ବୈପ୍ଳବିକ" ଚିନ୍ତା ଆସିବା କଷ୍ଟକର । ଓଡ଼ିଶାରେ ହିପ୍ପି, ବିଟଲ୍, ବିଟନିକ ହେବା ଅସମ୍ଭବ କେବଳ ଲମ୍ବାକେଶ ରଖିବା ବା L. S. D. ସେବନ ବ୍ୟତୀତ । ବ୍ରିଟେନର Permissive Societyର ରୂପ ନେଇ ରକ୍ଷଣଶୀଳତା ବିରୁଦ୍ଧରେ ସଂଗ୍ରାମ କରିବା ଅସମ୍ଭବ ବୌଦ୍ଧିକତାର କଥା । ଅର୍ଥକେନ୍ଦ୍ରିକ ସମାଜ ବ୍ୟବସ୍ଥା ହେତୁ ଆମର ନେତୃତ୍ୱ ଯେପରି ବିଫଳ ବୌଦ୍ଧିକତା ମଧ୍ୟ ତଦ୍ରୂପ ଦେବାଳିଆ । ପାଠକର ବୌଦ୍ଧିକ ପରିସ୍ଥିତି ଗୃହକର୍ମ ସର୍ବସ୍ୱ । ପାରମ୍ପରିକ ଚିନ୍ତାର ଅପସାରଣରେ ହେଗେଲ୍ ଦର୍ଶନ ଗ୍ରହଣ ଏକାବେଳେକେ ଅସମ୍ଭବ । ସେ ଅବସ୍ଥାରେ ଖାଲି ହେଗେଲ୍‌ଙ୍କ ଦର୍ଶନ ପଢ଼ି ଉକ୍ତ ତତ୍ତ୍ୱରେ ଦିବ୍ୟ ଦର୍ଶନ କରିଥିବା କବିର କବିତାକୁ ବୁଝିବା ଆମ ପକ୍ଷରେ କଷ୍ଟକର । ଅସ୍ତିତ୍ୱବାଦ ଓ ତଦୀୟ ମୃତ୍ୟୁଚେତନା ଆମପାଇଁ ଅକଳ୍ପନୀୟ ।

ପାଠକମାନଙ୍କ ପକ୍ଷରେ ଏତେ କଥା କହିଲା ପରେ ଏବେ କବିଙ୍କ ବିଷୟରେ ଆଲୋଚନା କରିବା ଉପଯୁକ୍ତ ମନେ କରୁଛି । କବିଙ୍କ ସଂଖ୍ୟା ଓ କବିତା ପାଠୋତ୍ସବର ସଂଖ୍ୟା ବୃଦ୍ଧି ଶିକ୍ଷା ପ୍ରସାର, ସାହିତ୍ୟାନୁରାଗ ବୃଦ୍ଧିର ଫଳ ନୁହେଁ, ଏକ ଅନୁକରଣୀୟ ଫେସନର ପ୍ରଭାବ ମଧ୍ୟ । ସମାଲୋଚନାର ଅଭାବରେ "ମନ୍ଦ କବି ଯଶ ପ୍ରାର୍ଥୀ" ଉପହସିତ ନ ହୋଇ ସାହିତ୍ୟରେ

ବ୍ୟଭିଗ୍ଭର ଚଳାଇଛନ୍ତି । ଭାଷାରେ ଶବ୍ଦଗତ ଅନଧିକାର ପରିବର୍ତ୍ତନ, ଦୁର୍ବୋଧତାର ଆଭରଣ ନେଇ ଆଜିର କବିତା ବହୁ କ୍ଷେତ୍ରରେ କବିତାର ସ୍ୱରୂପଠାରୁ ଦୂରେଇ ଯାଉଛି । ଏ ଦୂରତ୍ୱ ନବାଗତ ଅପ୍ରତିଷ୍ଠିତଙ୍କ ରଚନାରେ ଯେପରି ପରିଦୃଷ୍ଟ, ପ୍ରତିଷ୍ଠିତଙ୍କଠାରେ ମଧ୍ୟ ଠିକ୍ ସେହିପରି ପରିଲକ୍ଷିତ । ଉଦାହରଣ ସ୍ୱରୂପ ରାଧାମୋହନ ଗଡ଼ନାୟକଙ୍କର "ବିହ୍ଲଣର କାବ୍ୟ" (ଝଙ୍କାର ଜୁଲାଇ ୧୯୭୦)ରେ କବିତାର ସ୍ୱରୂପ କେତେ ଦୂର ଲକ୍ଷ୍ୟ କରିଯାଇ ପାରିବ ତା କେବଳ ଭଗବାନ ଜାଣନ୍ତି । ବିହ୍ଲଣ ଏବଂ ଚନ୍ଦ୍ରଲେଖାର ପ୍ରଣୟ କାହାଣୀ ବର୍ଣ୍ଣନା ଭିତରେ କବିତ୍ୱ କେଉଁଠି ରହିଲା ତାହା କେବଳ ଅତି ଶକ୍ତିସମ୍ପନ୍ନ ବ୍ୟକ୍ତି ଖୋଜିଲେ ଅବା ପାଇବେ । ବିଶେଷତଃ "ଏ ପାଖ ସେ ପାଖ'ର ବହୁଳ ପ୍ରୟୋଗ ଆନନ୍ଦିତ ପରିବର୍ତ୍ତେ ବିରକ୍ତି କରୁଛି ମାତ୍ର ।

ନୂତନ ପ୍ରତୀକ ଓ ରୂପକଳ୍ପର ପ୍ରୟୋଗରେ କବିତା ବୀଜ ଗଣିତର ପୃଷ୍ଠାକୁ ଓହ୍ଲାଇ ଆସୁଛି । 'ସନ୍ଧ୍ୟା ବେଳର ଦୃଶ୍ୟ" (ରମାକାନ୍ତ ରଥ—ଝଙ୍କାର ଜୁଲାଇ ୧୯୬୦) କବିତାଟି ଦୁର୍ବୋଧ "ଚିତ୍ରକଳ୍ପ ପ୍ରତୀକ"ଆଦିରେ ଭାରାକ୍ରାନ୍ତ । ଆଂଶିକ ଭାବରେ କେଉଁଠି କେମିତି ଭଲ ଲାଗୁଛି ଯଥା—ରାକ୍ଷସୀର "ପଟା କାଗଜର ତୀକ୍ଷ୍ଣ ସ୍ତନାଗ୍ରରେ ରକ୍ତର ଛୁଟିକା" ଓ "ତାର ତମ୍ବାବର୍ଣ୍ଣର ବାଳ ଦୁର ଇଟା ରଙ୍ଗର କୋଠାରେ ଜଳୁଥିବା ବିଦ୍ୟୁତର ଆଲୁଅରେ ଚକଚକ୍ କରେ ।" କିନ୍ତୁ ମଜା ପାଇବେଲ, ସୀସା ସମୁଦ୍ର ଆଡ଼କୁ ବୁଡ଼ିବା ପାଇଁ ପ୍ରାଣାନ୍ତକ ଚେଷ୍ଟା କରିବାପାଇଁ ପୁଣି ଏମିତି ଦୀର୍ଘ ଗୁଡ଼ିଏ ପୃଷ୍ଠାର କବିତାର ଅର୍ଥ ଖୋଜିବା ପାଇଁ ସମସ୍ତ ସହଜେ ନାହିଁ ଆବଶ୍ୟକତା ବା କେଉଁଠି ? ଉଂରେଜୀ ଶବ୍ଦଗତ ଦୁର୍ବୋଧତାକୁ ଏଡ଼ିଦେଇ ତୁମ ସଂଗୀତ ହୀନ କବିତା ଆମେ ତାହେଲେ ଶୁଣିବୁ ବା କାହିଁକି ? ଯଦି ବା ଶୁଣୁ ଆମେ ଖାଲି ତୁମର କଥା ଶୁଣିବୁ ଯାହା ମୋଟେ ଆମର ନୁହେଁ । ତୁମେ ଅବଶ୍ୟ ଆମ କଥାରେ ଲେଖିବନି (Yeats ଏଇ କଥା କହୁଥିଲେ) ମାନୁଚୁ କିନ୍ତୁ ତୁମ କଥା ଆମ କଥାରେ ପାଲସ ହେବା ଉଚିତ, ଏ ନାଲସର ପଥ ଶୀଘ୍ର ବନ୍ଦ କରିଯାଉ । ଅସ୍ତିତ୍ୱବାଦୀ ନିଉରୋଟିକ ମନୋଭାବ ସାଧାରଣ ପାଠକର କାହିଁ ?

ଗୋଟିଏ ବିଷୟର ବର୍ଣ୍ଣନା ଭିତରେ ହଜାରେ ନୂଆ ବିଷୟର ଅବତାରଣା ମଧ୍ୟରେ ଗୋଟିଏ ନିର୍ଦ୍ଦିଷ୍ଟ ଯୋଗସୂତ୍ର ଖୋଜି ପାଇବା କଷ୍ଟ । ସମୁଦ୍ର ଓ ଡେଉ କଥା କହିଲା ପରେ ମା' ପୁଅର ସମ୍ପର୍କ ସହଜରେ ସେଇ କବି ଚିନ୍ତା କରିପାରନ୍ତି

ସିନା, ପାଠକ ସେ ପ୍ରସଙ୍ଗ ରକ୍ଷା ଢଙ୍ଗରେ ମୋଟେଇ ସମର୍ଥ ହେବେ ନାହିଁ । ସେଇ ଆଜିର କବିତାରେ ତ କବି ଲେଖୁଛନ୍ତି "ଜୁନର ଖରାରେ ଡହଡହ ତାତିଲା ନଅଁରେ କୋଣ କୋଣ ଦଉଡ଼ିବା, ତୃଷାରେ ଡହଲ ବିକଳ ହେବା ପାଣିଥାଇ ଅନ୍ତ ନକଟରେ ।" (ଜଳବିମ୍ବ, ଉମାଶଙ୍କର ପଣ୍ଡା, ଝଂକାର, ଜୁଲାଇ ୧୯୭୦) ଏହାର କାବ୍ୟିକତା—

"ସୁଜନେ, କି କହିବି ମହୀତପତି,
କରାଇଲା ନୃତ୍ୟ ପଥିକ ପଦକୁ ସଂଗ୍ରାମ ଭୂମି ଅଶ୍ୱମତି ।"
(ଘନକୃଷ୍ଣ ଦାସ)

ପରି ଆଦରଣୀୟ, ଗ୍ରହଣୀୟ । "କଟକ ସହର" (ବିନୋଦ ନାୟକ, ଝଂକାର ଫେବୃୟାରି ୧୯୭୦), 'ପଦଧ୍ୱନି ; ଆସନ୍ନ ବସନ୍ତ (ମୁରାରିମୋହନ ସାହୁ) (ଏଜନ) "ନିୟୋଜନ" (ଏଜନ), ଝଂକାର, ଡିସେମ୍ବର ୧୯୬୯, "ମନବୋଧ ଚଉତିଶା, "ପୀତାକାନ୍ତ ମହାପାତ୍ର (ଏଜନ) ଆଦି ଅବଶ୍ୟ ସୁନ୍ଦର କବିତା । ଭୂମିଷ୍ଟ ଶିଶୁର କ୍ଷୁରଧାର ଚିତ୍କାରରେ କଟକ ସହରର ନିଦ୍ରା ଭାଙ୍ଗିବା ଓ ସିମେଣ୍ଟ (ମାଟିଲ ନ କରିଥିଲେ ଭଲ ହୋଇଥାନ୍ତା) ଚଟାଣରୁ ସୋଃଷ ଗୋଟାଇବାର ଭାଗ୍ୟ ଯଦି ନ ବଦଳେ ତେବେ ମନକୁ ବୋଧ କରିବା ଏକାନ୍ତ ହୃଦୟସ୍ପର୍ଶୀ । ସେହିପରି "ଖାଲି ଏକ ଜରିଲଗା ମଖମଲର ପୋଷାକ ପିନ୍ଧାଇ ସୁଆଙ୍ଗର ସମ୍ରାଟ କରନା" (ବିନୋଦ ନାୟକ, ବର୍ବିଂଶ ପାବଛରେ ଅସ୍ୱୀକାର, ଝଂକାର ଜୁଲାଇ ୧୯୭୦) ନିଧେ ସୁନ୍ଦର ।

## କବିତାର ନାମକରଣ :—

କେତେକ କବିତାର ରଚନା ଆଗ ଓ ପରେ ନାମକରଣ କରାଯାଏ ବୋଲି "ଅନାମ"ର ସ୍ଲୋଗାନ ଦିଅନ୍ତି । କିନ୍ତୁ ସକଳ କ୍ଷେତ୍ରରେ ଆଗ ସୃଷ୍ଟି ତା'ପରେ ସୃଷ୍ଟିର ଯାଥାର୍ଥ୍ୟ ନେଇ ନାମକରଣ କରାଯାଇଥାଏ । ଏଇ ନାମକରଣରେ ଦଳେ ଆସ୍ଥା ନ ରଖିବା ବେଳେ ଆଉ ଦଳେ ଅଦ୍ଭୁତ ନାମକରଣ କରୁଛନ୍ତି । "ସ୍ୱପ୍ନ ଏକ କମଲାଲେମ୍ବୁର" ନାମର "ପଦ୍ମଭୂକ୍"ର କବିତାଟିରେ ନାହିଁ । ସେହିପରି "ବିର୍ବିଂଶ ସିଂହାସନର ଅସ୍ୱୀକାର"ରେ ସମ୍ଭବତଃ "କୁ" ସ୍ଥାନରେ "ର"ର ପ୍ରୟୋଗ ପକ୍ଷପାତ ନିମିତ୍ତ କରାଯାଇଛି । ନାମରୁଇ କବିତାର ଅର୍ଥ ବାରିହେବା ଉଚିତ । 'Genuine poetry communicates before it is understood" (Eliot)

ସମ୍ଭବତଃ ଏଇ ନାମକରଣ ଉପରେ ଏହାର ଯାଥାର୍ଥ୍ୟ ପର୍ଯ୍ୟବସିତ । ତେଣୁ ଯଥାର୍ଥ ନାମକରଣ ଆଜିର କବିତାରେ କେତେକ ସ୍ଥାନରେ ଦେଖିବାକୁ ମିଳୁ ନାହିଁ ।

**କବିତାର ଶବ୍ଦ :—**

ଲୋକର ଭାଷା ଆଜିର କବିତାର ଭାଷା ହୋଇପାରେ । କିନ୍ତୁ ନୂତନ ଶବ୍ଦ (ଭାଷା) ନାଁରେ ଆଜି କେତେକ କବି ଓଡ଼ିଆ ଭାଷାଟାକୁ ବି ବିକୃତ କରିବା ପାଇଁ ବସିଛନ୍ତି । ବିକୃତ ଭାଷା ବା ଭ୍ରାନ୍ତ ବ୍ୟାକରଣ ଗର୍ହିତ ଶବ୍ଦ ପ୍ରୟୋଗ କରି କୋମଳ କାମିନୀ କବିତା ଉପରେ ପାଶବିକ ଅତ୍ୟାଚାର କରାଯାଇ ପାରେନା ।

୧ । ଶିଖା ଶବ୍ଦର ୭ମୀ ବିଭକ୍ତିରେ ରେ ପ୍ରତ୍ୟୟ ଲାଗିପାରେ କିନ୍ତୁ ଶିଖେ (ପାହାଡର ଶିଖେ ଶିଖେ, ଚଠି, ବିଜୟିନୀ ଦାସ ମାର୍ଚ୍ଚ ୧୯୭୦) ଏବଂ ଏହିପରି ସାଥିରୁ ସାଥେ, ରାତିରୁ ରାତେ, ଚକ୍ଷୁରୁ ଚକ୍ଷେ, ଏଥିରୁ ଏଥେ ଆଦି ପ୍ରୟୋଗ ଗ୍ରହଣ କରାଯାଇ ପାରେ ନା । ଏହି ଧାରାଟି ଆସିଛି ୫୦ ବର୍ଷ ତଳୁ ବଙ୍ଗ ଭାଷା ସହ ସାଲିସ କରି ।

୨। (କ) ବିଶେଷ୍ୟ ବିଶେଷଣର ଅଯଥାର୍ଥ ପ୍ରୟୋଗ :—

"ସେଇ ଭୁଲ୍ ଦରିଭୁଲ୍ ବିମୁଗ୍ଧ ସପନ ।"
(ଚଠି, ବି: ଦାସ, ଝଂକାର ମାର୍ଚ୍ଚ ୧୯୭୦)

ସ୍ୱପ୍ନ ଯିଏ ଦେଖେ ସେ ବିମୁଗ୍ଧ ହୁଏ; କିନ୍ତୁ ସ୍ୱପ୍ନ କେବେ ନିଜେ ନିଜର ମହିମାରେ ବିମୁଗ୍ଧ ହୁଏ ନାହିଁ ।

(ଖ) "ଗ୍ଲାଇ ଦେଖି ବର୍ଷଣ ସକାଳେ" (ଉପଚାର୍ଯ୍ୟକାର ଉତ୍ତରରେ, ଗୋପାଳ କୃଷ୍ଣ ରଥ, ଝଂକାର, ମାର୍ଚ୍ଚ ୧୯୭୦) (ପୃଷ୍ଠା) ବର୍ଷଣ ଏକ କାର୍ଯ୍ୟ ବା ଘଟନା ଏହା ବିଶେଷଣ କିପରି ହେବ ?

୪ । "ପାଇଥିବା ମୁଦ୍ରିକାର ଚିହ୍ନଟ କାଇଦା" (ଏଜନ) ଚିହ୍ନଟ କରିବାର କାଇଦା ଚିହ୍ନଟ କାଇଦା । ଏହି ପ୍ରୟୋଗକୁ ସହଜରେ ଗ୍ରହଣ କରି ହେବ କି ?

୫ । ସେହିପରି ଉକ୍ତ ମହାଶୟ "ବାହାର ମୂହାଣ" କଥା ଲେଖିଛନ୍ତି । ନଈର ମୂହାଣ ପାଠକେ ଦେଖିଛନ୍ତି, ଶୁଣିଛନ୍ତି । କିନ୍ତୁ ବାହାର ମୂହାଣ କ୍ଷେତ୍ରରେ "ହୈମୀ କୁରଙ୍ଗୀ ନ ଚ ପୂର୍ବବାର୍ତ୍ତା ନ ଶ୍ରୁୟତେ ବେଦ ପୁରାଣଗୀତେ ତଥାପି ତୃଷ୍ଣା ରଘୁନନ୍ଦନେନ ବିନାଶକାଳେ ବିପରୀତ ବୁଦ୍ଧି" ପରି ନ ହେଲେ ହେଲା ।

୬ । କ୍ଷୁତ୍ପିପାସା ପ୍ରଭୃତି ଶବ୍ଦ ଆହରଣ କରି ଦେଲେ ଓ Waiting press ଏବଂ Ready penରେ ପ୍ରକାଶ କରିଦେଲେ ଓଡ଼ିଆ ଭାଷାର ଉଦାରତା ସାମାନ୍ୟ ଭାବରେ ମଧ୍ୟ ବୃଦ୍ଧି ପାଇବ ନାହିଁ ।

୭ । ଗିଲାସେ ପାଣି, କଳେ କାକୁଡ଼ି ଓ ପୋଷେ ମୁଢ଼ି ପରି

"ଆମେ ପାଞ୍ଚ ବନ୍ଧୁ ଆଉ ପଚାଶ ବାନ୍ଧବୀ
ଘରକୁ ଫେରି ଆଇଲୁ ମ୍ୟାଟିନି ଶୋ ପରେ
ମୁଁ ଦେଖିଲି ମୋ ଘରେ ସମୁଦ୍ରେ ଅଂଧାର ।"
(ଅଂଧାରକୁ, ନରସିଂହ ନନ୍ଦ, ଝଂକାର ଜୁଲାଇ ୧୯୬୭)

ଲେଖିବାରେ ପାଠକ ଝୁଣ୍ଟିବ ଅବଶ୍ୟ ।

୮ । "ଏଇ ସବୁ ଝିଅ ବନ୍ଦମାନେ
ପାହାଡର ଗମ୍ବୁଜରୁ ଓହ୍ଲାଇ
ଓ ଝରଣାକୁ ଗାଧୋଇଲା ପରେ......" (ଏଜନ)

ନଈକୁ, କୂଅକୁ, ଝରଣାକୁ କେହି କେବେ ଗାଧୁଅନ୍ତି ନାହିଁ, ଗା-ଧୋଇବାକୁ ଯାଆନ୍ତି ମାତ୍ର ।

୯ । ରାଧାମୋହନ ଗଡନାୟକ ମଧ୍ୟ ନୂତନ ଶବ୍ଦ ସଂଧାନରେ ନିଜକୁ ବଳବାନ୍ ବୋଲି ଦେଖାଇ ହେବାକୁ ଯାଇ କବିତାକୁ "କୁଷ୍ଠ ରୋଗଗ୍ରସ୍ତ" ମଧ୍ୟ କରିଥାନ୍ତି । (ବହ୍ନିଣୀପ୍ସୁ କାବ୍ୟ, ଝଂକାର ଜୁଲାଇ—୧୯୬୦) ସୁତରାଂ ଶବ୍ଦ ପ୍ରୟୋଗ ପ୍ରତି ସମ୍ୟକ୍ ଦୃଷ୍ଟି ରଖିବା ଆବଶ୍ୟକ ଯାହା ଆଜିର କବିତାରେ ରହିପାରୁ ନାହିଁ ।

ବର୍ଣ୍ଣନା ଭ୍ରାନ୍ତି :— ଅକଳ୍ପନୀୟ, ଅପୂର୍ବଶ୍ରୁତ ଭ୍ରମ ବର୍ଣ୍ଣନା ଆଜିର କବିତାରେ ପ୍ରଚୁର ପରିମାଣରେ ଦେଖାଯାଏ ।

୧ । ସମ୍ଭବତଃ ମୁଁ ଏଠାରେ
ପ୍ରତ୍ୟେକ କେଉଁ ଏକ ଶାସ୍ତ୍ରର ଗଣ୍ଡି ଭିତରେ ଆବଦ୍ଧ
ଏବଂ କୃଷ୍ଣ ଅବା ବୁଦ୍ଧ ଅବା ଯୀଶୁଙ୍କର ଅପର—
ଲେଖନୀ ନିଃସୃତ କରୁଛି ଉପଦେଶ
(ମୋ ବୃତ୍ତାନ୍ତ, ହରିନାଥ ରଥ, ମାର୍ଚ୍ଚ—୧୯୭୦ ଝଙ୍କାର)

ତିନୋଟି ଧର୍ମର ନାଥ ଏଇ କୃଷ୍ଣ, ବୁଦ୍ଧ ଏବଂ ଯୀଶୁ ନିଜ ନିଜ ଧର୍ମ ରଥ ଚଳାଇଲା ବେଳେ କେବେ ହେଲେ ପଦେ ଅଧେ କଥା ଲେଖି ନାହାନ୍ତି, କହିଛନ୍ତି। ମାତ୍ର । ରଥଙ୍କ ଏ ଆବିଷ୍କାର ଇତିହାସ ପୁସ୍ତକରେ ନୁହେଁ ମାତ୍ର କବିତାରେ ଲେଖା ହୋଇଛି ବୋଲି ଯାହା ଦୁଃଖ ।

୨ । ଶୀତର ଝିଅ ପତ୍ରରେ (ମୃତ୍ୟୁଞ୍ଜୟ ନାରାୟଣ ନନ୍ଦ, ମାଳ ଉତ୍ତୁର ଲିରିକ୍, ଝଙ୍କାର ମାର୍ଚ୍ଚ—୧୯୭୦) ।

୩ । ବାରମ୍ବାର ଆଉଟାଇ ଆପଣଙ୍କୁ
ଆଶା ଏବଂ ନିରାଶାର ତାଡିଲା ତାଓ୍ବାରେ । (ସେଠି)

ଆମେ ବୋଧେ କ୍ଷୀର ଆଉଟୁ ତାଓ୍ବାରେ କରେଇରେ ଓ ଭଜା ଭଜୁ ହାଣ୍ଡିରେ, ଡେକ୍‌ଚିରେ ? କହିବାକୁ ବାଧ ହେଉଛି ଯେ ରୋଷେଇ ଘରୁ ଯଦି ଏମିତି କବିତା ବାହାରେ, ଭଗବାନ ଦୟା କରନ୍ତୁ କବିତା ଚୁଲିକୁ ନ ଯାଉ ।

୪ । ସୁପ୍ତ ଭସ୍ମ ଫସିଲ୍ ପାଲଟୁ ଖାରବେଳ ଘର୍ମ ଚେତନାର ।
(ଖଣ୍ଡଗିରି, ଦିଲୀପ ଦାସ, ଝଙ୍କାର ମାର୍ଚ୍ଚ—୭୦)

ଦିଲୀପ ବାବୁଙ୍କ କଥା ଅନୁଯାୟୀ ଯଦି ଖାରବେଳ ଭସ୍ମରେ ମିଳନ୍ତା ତେବେ ଦେଶର ବହୁ ଅର୍ଥ ବ୍ୟୟ ରୋକାଯାଇ ପାରନ୍ତା । କବିତା କ୍ଷେତ୍ରରେ ଏ ପ୍ରକାର ବର୍ଣ୍ଣନାକୁ ପାଠକ ବୃନ୍ଦ କେମିତି ଗ୍ରହଣ କରିବେ ତାହା ସେଇ କବିମାନେଇ କେବଳ ବୁଝିବା ଉଚିତ ।

## କବିତାର ସମାଲୋଚକ (ଶିକ୍ଷକ ବନ୍ଧୁ) :—

କର୍ମାନୁବନ୍ଧରେ ହେଉ ବା ସାହିତ୍ୟ ପ୍ରତି ସୃଷ୍ଟ ଅନୁରାଗ ହେତୁରୁ ହେଉ ବା ଆଉ ଯାହା ହେଉ ନା କାହିଁକି ଆଜିର କବିତାର ଆଲୋଚନା ସମାଲୋଚନା ବା ବିଚାର ବିବେଚନା ନିମିତ୍ତ ଅଧିକ ସଂଖ୍ୟାରେ ସାହିତ୍ୟ ଶିକ୍ଷକମାନେଇ ଆଗେଇ ଆସିଥାନ୍ତି । କିନ୍ତୁ ଦୁଃଖର କଥା ସେମାନେ ଅଧିକାଂଶ କ୍ଷେତ୍ରରେ କେତେଗୁଡ଼ିଏ ସୁନ୍ଦର ବିଶେଷଣ ଯଥା ସରସ ଜୀବନ୍ତାଦି ପ୍ରୟୋଗ କରି ନିଜର ଦାୟିତ୍ୱ ତୁଲାଇଥାନ୍ତି । ଫଳରେ କବିତା ପାଠ, ଅସମ୍ପୂର୍ଣ୍ଣ, ଅନ୍ୟାୟୋଚିତ, ଅନୁଭୂତି ବିହୀନ, ଅନ୍ତର୍ଦୃଷ୍ଟି ଶୂନ୍ୟ ସମାଲୋଚନାର ଶିକାର ହୋଇପଡ଼ୁଛି । ଲଗାମଛଡ଼ା ହୋଇ କବିତା ଗଡ଼ିଚାଲିଛି । କବିତାରେ ବୌଦ୍ଧିକତାର ପ୍ରାବଲ୍ୟ ଏକ ଶକ୍ତିଶାଳୀ ସ୍ଲୋଗାନ । ଏଇ ସ୍ଲୋଗାନ ନାଁରେ ହେଉଥିବା ଅତ୍ୟାଚାର ବିରୁଦ୍ଧରେ ସମାଲୋଚକ ସ୍ୱତଃ ନୀରବ ରହୁଛନ୍ତି ଅନ୍ୟଥା ତାଂକ ନିଜ ବୌଦ୍ଧିକତାର ଡ଼ିଣ୍ଡିମ ବାଦନରେ ଅଯଥା ବାଧା ସୃଷ୍ଟି ହୋଇପାରେ ।

## ଆଜି କବିତାର ଓକିଲାତି :—

ଆଜିର ନୂତନ କବିତାର ସପକ୍ଷରେ ଯେଉଁମାନେ ଯୁକ୍ତି ବାଢ଼ୁଛନ୍ତି ସେମାନେ ସତ୍ୟର ଆବିଷ୍କାର କରୁଛନ୍ତି ନିଷ୍ପତ୍ତି ମାତ୍ର ବ୍ୟାଖ୍ୟା କରୁଛନ୍ତି ନିଜକୁ ନିରାପଦ ରଖିବା ନିମିତ୍ତ । ଉଦାହରଣ ସ୍ୱରୂପ— "ସ୍ୱସ୍ତିକତର ନୀଳ ତ୍ରିକୋଣ ଓ ନିରୋଧରେ ବେଲୁନ ଉଆର ଏକ ମାନସିକ ପରିବର୍ତ୍ତନ କରୁଛି ଓ କବି ତାକୁ ରୂପ ଦେବାକୁ ଯାଉଛି ମାତ୍ର ।" ତେବେ ମୋର ପ୍ରଶ୍ନ ଆଗର ମନ୍ଦିରଗାତ୍ରର ଚିତ୍ର, ଶୃଙ୍ଗାର ରସାତ୍ମକ କାବ୍ୟ କାହିଁକି ସେତେବେଳେ ଆଜିର କବିତାର ସ୍ୱରୂପ ସୃଷ୍ଟି କରିପାରି ନଥିଲା ? ପାଶ୍ଚାତ୍ୟ ସାହିତ୍ୟର ପରିବର୍ତ୍ତନ ଓ ଓଡ଼ିଆ ସାହିତ୍ୟରେ ହେଉଥିବା ପରିବର୍ତ୍ତନରେ କାରଣ ଓ ପରିବେଶ ଆଦିରେ ଥିବା ପାର୍ଥକ୍ୟକୁ ସ୍ୱୀକାର କରି ମଧ୍ୟ ଯେଉଁ ଟିକିଏ ଟିକିଏ ଆକସ୍ମିକ ସାମ୍ୟ (Coincidence)କୁ ଲକ୍ଷ୍ୟ କରି ପାଶ୍ଚାତ୍ୟ ସାହିତ୍ୟର ଯୁକ୍ତିକୁ ପ୍ରୟୋଗ କରୁଛନ୍ତି । "ସାବଲୀଳ ଅଭିବ୍ୟକ୍ତି ଓ ସ୍ୱବିଶ୍ଳେଷଣାତ୍ମକ" କବିତାର ସପକ୍ଷରେ ରହି ମଧ୍ୟ ନିଜର କଥା ଓ କାର୍ଯ୍ୟରେ ଅନ୍ତର ସୃଷ୍ଟି କରୁଛନ୍ତି ।

## କବିତା ଓ କବିର ଅନୁଷ୍ଠାନ :—

ହୁଏତ ନିଜର ସୃଷ୍ଟିରେ ସାହିତ୍ୟ ଯୁଗରେ ଚିହ୍ନ ରଖିବା ପାଇଁ ବ୍ୟାକୁଳ ହୋଇ ହେଉ ବା ନିଜ ଆଦର୍ଶର ଦୋଷ-ଦୁର୍ବଳତା ଜାଣି କେବଳ ଜୋର ଜବରଦସ୍ତି ପାଠକ ଉପରେ ଲଦି ଦେବାକୁ ସଂଘବଦ୍ଧ ଚେଷ୍ଟା କରିବାପାଇଁ ହେଉ ବା ବୈଜ୍ଞାନିକ ଉନ୍ନତିରେ ସଂଘବଦ୍ଧ ହେବାର ଆବଶ୍ୟକତା ହେତୁରୁ ହେଉ ବା ଯାହା ହେଉନା କାହିଁକି ଆଜି ଗୋଷ୍ଠୀମାନ ଗଠିତ ହେଉଛି । ସଂଘମାନ ଗଠିତ ହେଉଛି । ସାହିତ୍ୟ ପ୍ରତି ଅନୁରାଗ ସୃଷ୍ଟି କରିବାପାଇଁ "ସମ୍ମେଳନ"ର ଆବଶ୍ୟକତା କାହିଁ ? ସାହିତ୍ୟ ଯଦି ଅନୁରକ୍ତ କରିଲାପରି କିଛି ଗୁଣ ବହନ କରେ ତେବେ ସାହିତ୍ୟପ୍ରେମୀ ସ୍ୱତଃ ଆସିବେ । ଭାବର ଆଦାନପ୍ରଦାନ ତ କବିତା ମାଧ୍ୟମରେ ସମ୍ଭବ । ତେବେ ସେଥିପାଇଁ ବି ସଂଘର ଆବଶ୍ୟକତା ନାହିଁ । ଭାବର ଆଦାନପ୍ରଦାନ ନିମିତ୍ତ ଯଦି ଏହା. ସଂଗଠିତ ତେବେ "ସାହିତ୍ୟ ମାଧ୍ୟମରେ ଭାବ ମୋଟେଇ ପ୍ରକାଶିତ ହେଉନି ବୋଲି" ବ୍ୟାଖ୍ୟା କଲେ କି ଉତ୍ତର ଦିଆଯାଇ ପାରେ ? ତେବେ ଯାହା ହେଉ ଗୋଷ୍ଠୀ ସଂଘମାନ ଗଠିତ ହେଉଛି ଏହା କବିତା କ୍ଷେତ୍ରରେ ଏକ ସତ୍ୟ ।

ପରିଶେଷରେ କବିତାର ଗତି ଆଜି ମୁକ୍ତି ଆହରଣ କରିବାକୁ; କିନ୍ତୁ ଅକ୍ଟୋପସ୍ କବଳରେ ନ ପଡ଼ିଲେ ହେଲା । କବିତା ଗତିକରୁ ସ୍ଥାଣୁ ନ ହେଉ ।



# ଆଧୁନିକ ଓଡ଼ିଆ କବିତାରେ ସମାଜ-ଚେତନା

ଆଧୁନିକ କବି ଆଗରେ ପ୍ରଧାନ ଉପଜୀବ୍ୟ ବିଷୟ ହେଉଛି ସମାଜ । ସେ ସମାଜର ଦୈନ୍ୟକୁ ଓ ବାସ୍ତବ ସ୍ଥିତିକୁ ସାହିତ୍ୟରେ ରୂପ ଦେବା ପାଇଁ ଗୃହେଁ । ପ୍ରତିଯୁଗରେ ସାହିତ୍ୟିକ ସମାଜର ଚିତ୍ର ଆଙ୍କିବାକୁ ଆଗେଇ ଯିବାକୁ ଚେଷ୍ଟା କରିଥାଏ । ମାତ୍ର ସାହିତ୍ୟର ଇତିହାସରୁ ଜଣାଯାଏ ଯେ କବି ବାସ୍ତବ ବର୍ଣ୍ଣନାରେ ନିଜର କାବ୍ୟାଦର୍ଶ ନିହିତ ବୋଲି କହିଥିଲେ ମଧ୍ୟ କଳ୍ପନା ଓ ସ୍ୱପ୍ନ ତାର ସମାଜ ସଚେତନତା ଓ ବାସ୍ତବବାଦୀ ଦୃଷ୍ଟିକୋଣକୁ ବିଭ୍ରାନ୍ତ କରିଛି । ତେଣୁ ସମାଜର ଅସଲ ରୂପକୁ କାବ୍ୟରେ ପ୍ରକାଶ କରିବାକୁ ଅସମର୍ଥ ହୋଇଛି । ବୈଦିକ ଋଷି ପ୍ରକୃତିର ବାସ୍ତବ ରୂପ ଦର୍ଶନ କଲେ ହେଁ ତାଙ୍କର ସାହିତ୍ୟରେ ବାସ୍ତବ ଚିତ୍ର ତୁଳନାରେ ପ୍ରକୃତିର ପ୍ରତିଟି ସତ୍ତାରେ ଏକ ଦିବ୍ୟ ଦର୍ଶନର ଭାବ ଅଧିକ ପ୍ରସ୍ଫୁଟିତ ହୋଇଛି । ବୈଦିକ ଋଷି ପ୍ରକୃତି କୋଳରେ ଲକ୍ଷ୍ୟ କରିଛି ଏକ ବିଶାଳ ଅଶ୍ୱତ୍ଥ ବୃକ୍ଷ । ସେହି ଅଶ୍ୱତ୍ଥ ଗଛକୁ ଦେଖି ସେ ସଂସାର ସଙ୍ଗରେ ତୁଳନା କରିଛି । ଗଛର ଡାଳରେ ବସିଛନ୍ତି ଦୁଇଟି ପକ୍ଷୀ । ଏହି ପକ୍ଷୀ ଦୟଙ୍କୁ ବୈଦିକ କବି ଜୀବାତ୍ମା ଓ ପରମାତ୍ମା ରୂପେ ଗ୍ରହଣ କରି ନେଇଛନ୍ତି । ଏଠାରେ ଏଣୁ ପ୍ରକୃତିର ବା ସମାଜର ବାସ୍ତବ ରୂପ ପ୍ରକାଶନ ଭିତରେ ଦାର୍ଶନିକ ଚିନ୍ତାଧାରାର ସ୍ଥିତି ପ୍ରମୁଖ ହୋଇ ଉଠେ ।

ସେହିଭଳି ପରବର୍ତ୍ତୀ ସମୟରେ ଯେତେବେଳେ ଶୃଙ୍ଗାର ରସରେ ଦ୍ରବୀଭୂତ କାବ୍ୟ ରଚନା କରାଗଲା ସେତେବେଳେ ବାସ୍ତବତାର ପ୍ରଦାନ କେବଳ କେତେକ ସାମାଜିକ ଘଟଣାର ବର୍ଣ୍ଣନା ବା ନାରୀର ଦୈହିକ ସୌନ୍ଦର୍ଯ୍ୟର ଉପମା ଭିତରେ ବନ୍ଦୀ ହୋଇ ପଡ଼ିଲା ।

ଭକ୍ତି ସାହିତ୍ୟରେ ବାସ୍ତବତା ବୋଇଲେ କେବଳ ଜୀବନର ନଶ୍ୱରତାକୁ ବୁଝାଇଲା । ଏହି ନଶ୍ୱରତା ବ୍ୟକ୍ତି ମନରେ ସୃଷ୍ଟି କଲା ଏକ ନୈରାଶ୍ୟ ଜର୍ଜରିତ ଭୟ ଓ ସେ ଭୟରୁ ମୁକ୍ତି ଲାଭ କରି ସାହସ ସଞ୍ଚୟ କରିବା ନିମିତ୍ତ ବୈରାଗ୍ୟଭାବ ସମନ୍ୱିତ ଗୂଢ଼ତୂକାରିତା, ଜୀବନର ନଶ୍ୱରତା ଓ ଯନ୍ତ୍ରଣାକୁ ଦେଖି ଭକ୍ତକବି ସଂହସ୍ତ ହୋଇଥିଲା । ସେ ସର୍ବାଦୌ ଲକ୍ଷ୍ୟ କରିଥିଲା ଯେ ଜୀବନ ହେଉଛି ବିଦ୍ୟୁତର ସ୍ଫୁରଣ ପରି ଅଳୀକ ଓ କ୍ଷଣିକ । ଆୟୁଷ ଚିର କ୍ଷୟିଷ୍ଣୁ । ପୁନଶ୍ଚ ଏହି ଧାରାକୁ କୌଣସି ମାନବିକ ଶକ୍ତି ଏଡ଼େଇ ପାରିବ ନାହିଁ । ବ୍ୟକ୍ତି ଜୀବନର ସକଳ ସମ୍ପର୍କ ଅବାସ୍ତବ ଓ ସ୍ୱାର୍ଥ ବିଜଡ଼ିତ । ବ୍ୟକ୍ତି ଜୀବିତାବସ୍ଥାରେ ମୋ ସ୍ତ୍ରୀ, ମୋ ପୁଅ, ମୋ ଝିଅ କହି ମାୟାଗ୍ରସ୍ତ ହୁଏ । ମାତ୍ର ଏହା ମୂଲ୍ୟହୀନ, କାରଣ ଜୀବିତାବସ୍ଥାର ସକଳ ସମ୍ପର୍କ ମୃତ୍ୟୁବେଳେ ନିଶ୍ଚିହ୍ନ ହୋଇଯାଏ । ତେଣୁ କବି ଗାଇଥିଲେ–

କା ତବ କାନ୍ତା କାସ୍ତେ ପୁତ୍ରଃ
ସଂସାରୋଽୟଂ ଅତୀବ ବିଚିତ୍ରଃ ।
× × ×
ଅଙ୍ଗଂ ଗଳିତଂ ପଳିତଂ ମୁଣ୍ଡଂ
ଦନ୍ତ ବିହୀନଂ ଜାତଂ ତୁଣ୍ଡଂ
କରଧୃତ କମ୍ପିତ ଶୋଭିତ ଦଣ୍ଡଂ
ତଦପି ନ ମୁଞ୍ଚତ୍ୟାଶା ଭାଣ୍ଡଂ ।
ଯାବତ୍ ବିତ୍ତୋପାର୍ଜନ ଶକ୍ତଃ
ତାବନ୍ନିଜୋ ପରିବାରୋରକ୍ତଃ
ତଦନୁଚ ଜରୟା ଜର୍ଜର ଦେହେ
ବାର୍ତ୍ତାଂ କୋଽପିନ ପୃଚ୍ଛନଗେହେ ।

—ଶଙ୍କରାଚାର୍ଯ୍ୟ

ସଂସାରର ଏହି ନଶ୍ୱର ବାସ୍ତବସ୍ଥିତିକୁ ଚେତେଇ ଦେଇ କୁହାଗଲା-ରେ ମନୁପୁତ୍ର ! ତୁମେ ଲକ୍ଷ୍ୟ କର ଯେ ଜୀବନର ଆୟୁଷ ପ୍ରତି ମୁହୂର୍ତ୍ତରେ କ୍ଷୟିତ

ହେଉଛି । ଗୋଟିଏ ଦିନ ଗଲେ ଆଉ ସେ ଦିନଟି ଫେରି ଆସୁ ନାହିଁ । ତୁମରି ଆଖି ଆଗରେ ଜୀବନ ଝରି ଝରି ଯାଉଛି । ଯୌବନ ସରି ସରି ଆସୁଛି । ସମ୍ପତ୍ତି ବା ବିଭବର ମୋହରେ ମୋହିତ ହୋଇ ତୁ ଜୀବନର ଏହି ବାସ୍ତବ ଦିଗ ପ୍ରତି ସଚେତନ ହେଉନାହୁଁ । କିନ୍ତୁ ଏହା ବୃଥା । କାରଣ ପାଣିର ତରଙ୍ଗ ପରି ସମ୍ପତ୍ତିର ସ୍ଥିତି କ୍ଷଣିକ । ବିଦ୍ୟୁତ୍‌ର ଚଳନ ପରି ଜୀବନ । ଏଣୁ ତୁମେ ଭିନ୍ନ କଥାରେ ମନ ନଦେଇ ବରଂ କିଭଳି ଭାବରେ ଜୀବନର ସାର୍ଥକତା ହାସଲ କରି ହେବ ସେ ଦିଗରେ ତତ୍ପର ହୁଅ । କବିର ବାଣୀ ହେଲା ଯେ—

ରେ ଆତ୍ମନ୍ ନିଦ୍ରା ପରିହରି
ଫେଡ଼ ଚିନ୍ତାର ଲୋଚନ
କର କର ନିରୀକ୍ଷଣ
ନିରବଧି ଜୀବନ ସ୍ରୋତ ଧାଉଁଛି କିପରି ।

ଅବଶ୍ୟ ଏହି ବିଷମୟ ସ୍ଥିତି ସମ୍ପର୍କରେ ଚେତେଇ ଦେବା ସଙ୍ଗେ ସଙ୍ଗେ ଏହି ସ୍ଥିତିରୁ ଉଦ୍ଧାର ପାଇବାର ଉପାୟ ମଧ୍ୟ ବତେଇ ଦିଆଗଲା । ସେହି ଉପାୟ ହେଉଛି—

ତସ୍ମାତ୍ ମାଂ ଶରଣାଗତଂ ଶରଣଦେ
ତ୍ୱଂ ରକ୍ଷ ରକ୍ଷାଧୁନା ।

ପୁଣି ଏହି ଶରଣାପନ୍ନ ହେବା ସମ୍ପର୍କରେ କିଛି ମାତ୍ର ନିୟମ ବତେଇ ଦିଆଗଲା । ପ୍ରଥମ ମାତ୍ର ହେଉଛି ସଂସାର ପ୍ରତି ଅନାସକ୍ତ ହୁଅ । ଦ୍ୱିତୀୟ ବିଷ୍ଣୁଙ୍କ ପଦାରବିନ୍ଦରେ ମନୋନିବେଶ କର । ତୃତୀୟ ପ୍ରକୃତ ମୃତ୍ୟୁ ମୁହୂର୍ତ୍ତର ଯଥେଷ୍ଟ ପୂର୍ବରୁ ପ୍ରଭୁଙ୍କୁ ଡାକ । ଚତୁର୍ଥ ଭଗବାନଙ୍କୁ ଖୁସାମତ କର । କାରଣ ଏହି ଗୃହକାରିତା ବ୍ୟତିରେକ ଭଗବାନଙ୍କୁ ଅଟକେଇ ହେବ ନାହିଁ । ଫୁସଲେଇ ହେବ ନାହିଁ । ତେଣୁ କୁହାଗଲା,—

ଭଜ ଗୋବିନ୍ଦଂ ସ୍ମର ଗୋବିନ୍ଦଂ
ଗୋବିନ୍ଦଂ ଭଜ ମୂଢ଼ମତେ ।

ତାଙ୍କୁ ଡାକଲେ ସେ ଆଗ ତୁମଙ୍କୁ କହିବେ ହାତୀ ନେ ଘୋଡା ନେ । କିନ୍ତୁ ହସିଆର ! ସେଥିରେ ନଭୁଲ ଅସଲ କଥାଟି ମାଗିବ । ଧନଜନ ମୁଖ୍ୟ ନୁହେଁ ତେଣୁ କବି ଲେଖିଲେ—

ନଚୈ ପ୍ରାର୍ଥ୍ୟଂ ରାଜ୍ୟଂ
ନ ଚ କନକ ମାଣକ୍ୟବିଭବଂ

ମାତ୍ର ଆଜି କବି ବାସ୍ତବର ତଟ ହେବାକୁ ଗଲା ବେଳେ ଜୀବନଧାରଣର ଦୁଃଖ ଦୈନ୍ୟକୁ ରୂପ ଦେଉଛି । ମାତ୍ର ଏଥି ନିମିତ୍ତ ଭଗବାନଙ୍କ ପରି ଏକ ପରିକଳ୍ପିତ ସତ୍ତାକୁ ଡାକୁନି । ଏଣୁ ଆଜି କବିର କାବ୍ୟାଦର୍ଶ ହେଉଛି—

"ହେ ମୋର କଲମ
ନିର୍ମମ ତୁରେ ଦୁଷ୍ଟ ଦଳନେ ସଦା
ଧୂରନ୍ଧର ଯେ ସନ୍ଥ ପାଳନେ ପୁଣି ।"

ପୁନଶ୍ଚ କବି ସମାଜର ଦୋଷକୁ ଦେଖି ସେହି ଦୁର୍ବଳତା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛି । ବାସ୍ତବସ୍ଥିତିକୁ ଦେଖି ସାହିତ୍ୟରେ ରୂପାୟିତ କରିବା ପାଇଁ ଗୃହିଁଛି । ଆଜି ପୃଥିବୀ ବଡ ଅସହାୟ । ମଣିଷ ଏକ ଦସ୍ୟୁମୟ ଜୀବନ ବିତାଉଛି । ଚତୁର୍ଦ୍ଦିଗରେ ଜଳି ଉଠିଛି ହିଂସାର ଦାବାନଳ । ସମାଜରେ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ଭେଦର ପାଚେରୀ ଗଢା ହେଉଛି । ଆତ୍ମିକ ଉନ୍ନତି ଓ ନିତ୍ୟାନନ୍ଦ ଲଭର କ୍ଷେତ୍ର ସ୍ୱରୂପ ମନ୍ଦିର କ୍ଷଣିକ ଉତ୍ତେଜନା ସୃଷ୍ଟି କରୁଥିବା ପଣ୍ୟଶାଳା ବା ବଜାରରେ ପରିବର୍ତ୍ତିତ ହୋଇଛି । ଧର୍ମ,ଭଗବାନ ଓ ଆଧ୍ୟାତ୍ମିକତାର ପବିତ୍ରତା ଅବଲୁପ୍ତ । ଲୋକେ ନିଜ ବୈଭବର ବଡ଼ିମା ଦେଖାଇବାରେ ବ୍ୟସ୍ତ । ଚତୁର୍ଦ୍ଦିଗରେ ଅହମିକାର ତାଣ୍ଡବ ନୃତ୍ୟ । ଆଣବିକ କ୍ରୂର ହସରେ ମାନବ ଜୀବନ ବିପର୍ଯ୍ୟସ୍ତ । ମାନବିକତା ବଦଳରେ ପାଶବିକତାର ରାଜତ୍ୱ ଚାଲିଛି । ସ୍ୱାର୍ଥର କରାଳ ନୃତ୍ୟ ଭିତରେ ଦୟା କ୍ଷମା ସ୍ନେହ ମୈତ୍ରୀ, ସମ୍ବେଦନଶୀଳତା ଆଦି ମାନବିକତା ପଥହରା ହୋଇଛି । ସବୁ ଆଡେ କୁଟ କାପଟ୍ୟ, ଶଠତା ପ୍ରବଞ୍ଚନା ଭରି ଯାଇଛି । ସାହିତ୍ୟ ନାଁରେ ରାଜନୀତି ଚାଲିଛି, ଆମେ ସ୍ୱାଧୀନ ହୋଇଛୁ । କିନ୍ତୁ ସେ ସ୍ୱାଧୀନତା କେବଳ କଥାରେ ରହିଛି । କାରଣ ଆମର ଅର୍ଥନୈତିକ ସ୍ୱାଧୀନତା ନାହିଁ । ଏଣୁ ତୁଳସୀ ଦାସ ଲେଖିଛନ୍ତି—

ହେ ମୋର କଲମ ଦେଖି କି ପାରୁନୁ ସତେ
ଆମ ଏ ପୃଥିବୀ ଆଜ କେତେ ଅସହାୟ
କେତେ ଦସ୍ଯୁମାୟ ଆମ ଏ ମଣିଷ ଆଜ
ସବୁଠାରେ ଭରା ହିଂସାର ଅଭିପ୍ରାୟ
ଭେଦର ପାଚେରୀ ମେଦରେ ହୁଅଇ ଗଢ଼ା
ମନ୍ଦିର ନଏ ପଣ୍ୟଶାଳାର ରୂପ
ବିଭବ ବଡ଼ିମା ଅନୃତ ଅଧମିକା
ସବୁଠି ଉଠାଏ ମରଣର ଭୀମ ସ୍ତୂପ

× × ×

ମଣିଷର ନାମେ ଚାଲେ ପଶୁ କାରବାର
ନିରତ ଲାଗିଛୁ ହୀନ ସ୍ୱାର୍ଥର ନଷ୍ଟ
ବଡ ସାନ ଆଜ ବାରି ହୁଏ ନାହିଁ କିଛୁ
ସବୁଠି ବସିଛୁ କୁଟ କପଟର ହାଟ ।
ସାହିତ୍ୟ ନାମେ ଚାଲେ ଖାଲି ରାଜନୀତି
ବାଣୀ ପୂଜା ନାମେ ଅଧମିକା ନାଗ ଖେଳେ
ପ୍ରତିଭାବାନ୍ ଯେ ଆଦର ପାଏନି କାହିଁ
ମରାଳ ଛପଇ ଆଜ ବକାକାର ମେଳେ ।

× × ×

ଯୁକ୍ତିରେ ଆମେ ମୁକ୍ତି ଲଭିଛୁ ଆହା
ବଞ୍ଚିବା ଲାଗି ମାର୍କିନ୍ ଅଣ୍ଟା ଖାଉ
ଅଷ୍ଟ୍ରେଲିୟାର ଗୁଣ୍ଡ ଦୁଧ ଯେ ଆସି
ବଢାଏ ଯେ ଆମ ଶିଶୁ ଜୀବନର ଭାଉ
ରୁଷିଆ ଦେଇଛି ମିଗ୍ ବିମାନରେ ଉଡୁ
ସମ୍ମାନ ରଖେ ବିଲାତର ରାଇଫଲ
ପର କଥା କହି ନିଜକୁ ଯେ ମଣୁ ବଡ଼
ଘରେ ଖୋଲେ ଶୋଇ ପଦା ଛଇରେ କି ଫଳ ?

– ତୁଳସୀ ଦାସ, ଝଡର ଝଙ୍କାର,
ହେ ମୋର କଲମ

କେବଳ ସେତିକି ନୁହେ ଏଇ ମାଟି ଉପରେ ଅପମାନିତ ଅବହେଳିତ ମଥିତ ଲାଞ୍ଛିତ ପୀଡ଼ିତ ମଣିଷର ବ୍ୟଥାକୁ ଗାଥାରେ ରୂପ ଦେବା ପାଇଁ କବି ଚାହିଁଛି । ଏଇ ପୃଥିବୀର ରାଜରାସ୍ତା ଉପରେ ଗଲାବେଳେ କବି ମଣିଷ ଜାତିର ବ୍ୟଥାକୁ ଦେଖିଛି, ସେହି ବ୍ୟଥାକୁ କବି ନିଜ କବିତାରେ ଉପଜୀବ୍ୟ କରି ନେବା ପାଇଁ ଚାହିଁଛନ୍ତି । ପୁନଶ୍ଚ ଏହି ବାସ୍ତବତାର କାହାଣୀ ଲେଖିଲା ବେଳେ କବି କୌଣସି ଶାବ୍ଦିକ ଛଳନା ବା କାପଟ୍ୟକୁ ଆଶ୍ରୟ କରି ନାହାନ୍ତି । କବିଙ୍କର ବାଣୀ ଅତି ସରଳ ଏବଂ ସ୍ପଷ୍ଟ । ତେଣୁ ଆଧୁନିକ କବି ସଚ୍ଚିଦାନନ୍ଦ ରାଉତରାୟ ଲେଖୁଛନ୍ତି-

ଧରଣୀର ରାଜପଥେ ଚାଲି ଚାଲି
ପଥଚାରୀ ମୁହିଁ
ଯେ ବ୍ୟଥା ବାଜିଛି ବୁକେ ମଣିଷର
ଅପମାନ ଛୁଇଁ
ତାକୁହିଁ ଦେଇଚି ବାଣୀ, କହୁଛି ସେ
ସାଧାରଣ କଥା
ଘିଷଇ କପଟ ଜାଲେ ରଚି ନାଇଁ
ମାୟାଜାଲ ଯଥା ।

ଏହି ବାଣୀ କେବଳ ସଚ୍ଚି ବାବୁଙ୍କର ନୁହେଁ ବା କେବଳ ଆଧୁନିକ ଓଡ଼ିଆ କବିଙ୍କର ନୁହେଁ । ହିନ୍ଦୀରେ ମଧ୍ୟ ଆଧୁନିକ କବି ଠିକ୍ ଏଇ କଥା କହିଛନ୍ତି ।

ଦର୍ଦ୍ଦ କି ସହନାଇଆଁ ବଜତି ରହେଁ
ଦୁଲହନେଂ ସୁଧୀ କି ସଦା ସଜତି ରହେଁ
ରୁକ ନ ଯାଏ ଜିନ୍ଦଗୀ କି କାରୱାଁ
କାଫିଲେ କି ଘଣ୍ଟିଆଁ ବଜତି ରହେଁ
ବୁଝ୍ ନ ଜାୟେ ପ୍ୟାରକି ଜଲତା ଚିରାଗ
ସର୍ଦ୍ଦ ହୋ ନ ଜାୟେ ମେରେ ଦିଲକି ଆଗ ।

ଅବଶ୍ୟ ଏଠାରେ ହିନ୍ଦୀ କବି ନର୍ମଦେଶ୍ୱର ଉପାଧ୍ୟାୟ ଜୀବନର ଗତିକୁ ରୋକିବା ବା ବଦଳାଇବା ନିମିତ୍ତ ସାହସ କରି ପାରିନାହାନ୍ତି । ବରଂ ଆଧୁନିକ କବିର ବହୁଜନ ହିତାୟ ଅଭିପ୍ରେତ ଏହା ଏକ ବହୁ ଦିନର ସ୍ଲୋଗାନ୍ । ମଧ୍ୟ ଯୁଗରେ

ଏଇ ଠିକ୍ କଥା କୁହାଯାଇଥିଲା । ମାତ୍ର ଆଜି କବି ଏକ ଭିନ୍ନ ଦୃଷ୍ଟିକୋଣରୁ ଦେଶ ଏବଂ ଦଶର ମଙ୍ଗଳ ନିମିତ୍ତ ଚିନ୍ତା କରୁଛି । ପ୍ରଥମତଃ ସେ ଦେଶର ଅର୍ଥନୈତିକ, ସାମାଜିକ ଓ ରାଜନୈତିକ ଦୁରବସ୍ଥା ଓ ଦୁର୍ଗତିର ଚିତ୍ର ଦେଖୁଛି । ଏକ ବିପର୍ଯ୍ୟସ୍ତ ରୁଗ୍ଣ କାଷ୍ଠ ଧ୍ୱଂସ୍ତ ବ୍ୟବସ୍ଥା ଭିତରେ ଲକ୍ଷ୍ୟ କରୁଛି ଯେ କଳ୍ପନାର ସ୍ଥାନ ନାହିଁ ବା ନାନ୍ଦନିକ କଳାର କୌଣସି ମୂଲ୍ୟ ନାହିଁ । ସଚ୍ଚି ବାବୁ ଲେଖିଛନ୍ତି—

ଯେଉଁଠି ମରଇ ଶିଶୁ
ଜନମୀର ଆର୍ଦ୍ର ବୁକେ ଶୋଇ
ଫୁଲର ଫସଲ ଯାଏ ବୈଶାଖର
କାଳଝଡ଼ ଧୋଇ
ତୁମର ନନ୍ଦନ କଳା
ତୁମର ସେ ମାଧବୀ କଳ୍ପନା
କପଟ ମଣିଷ ସତେ
କାହିଁ କବି କରିବ ଅର୍ଚ୍ଚନା
ସେ ଯେ ନିଃସ୍ୱ, ସେ ଯେ ସର୍ବହରା ।
ଅଛି ଖାଲି କ୍ଷୁଧା, ତୃଷା, ଆଉ ଅଛି
ଏତେ ଟିକେ ଜାଗା
ଧରିତ୍ରୀକେ ମରିବାର ପାଇଁ
ଚରଣେ ଶୃଙ୍ଖଳ ଅଛି
ଏହା ଛଡ଼ା ଆଉ କିଛି ନାହିଁ
ସେ ଯେ ସର୍ବହରା ।

ତେଣୁ କବି ଧରଣୀର ବ୍ୟଥାର ଗାଥାକୁ ଜନତାର ଗୀତ ବୋଲି ଗ୍ରହଣ କରିଛି । ସେ ଆର୍ତ୍ତ ପୀଡ଼ିତ ନିଖିଳ ଜନର ମର୍ମବାଣୀ ଶୁଣାଇବା ନିମିତ୍ତ ବ୍ୟାକୁଳ ହୋଇ ଉଠିଛି । ଫଳରେ କବିର ଅନ୍ତର୍ପକ୍ଷରେ ପରିବର୍ତ୍ତନ ଆସିଛି । ସେ ଅତୀତର କବିଠାରୁ ଭିନ୍ନ । ତେଣୁ ସେ କହୁଛି-

ତୁମକୁ ମୁଁ ପୁରସ୍କାର ଦେଲି
ଆହେ ବଣ୍ଟୁରକ
ମୋର ଏ କବିତା
ସଂସାରରେ କବି ବୋଲି ବୋଲନ୍ତି ଯାହାକୁ

ସେ କବି ମୁଁ ନୁହେଁ ।
ମୋହର କଳ୍ପନା ଗୀତା
ଜନ୍ମି ଥିଲା ଏ ମାଟିର କଠୋର ଜଠରୁ ।"
ନମସ୍କାର କର, ମନମୋହନ ମିଶ୍ର

ଅର୍ଥାତ୍ ମୁଁ ପୂର୍ବର କବିଙ୍କଠାରୁ ଭିନ୍ନ । ମୋର କାବ୍ୟନାୟିକା ଗୀତା କଳ୍ପନାର ପାରିବାରିକାରେ ଜନ୍ମ ନ ନେଇ ଏଇ ଧୂଳି ଧୂସରିତ ଧରଣୀର କଠୋର ନିଷ୍ଠୁର ବାସ୍ତବତା ଭିତରୁ ଜନ୍ମ ନେଇଥିଲା ।

ଆଜିର କବିଙ୍କ ମଧ୍ୟରୁ କେହି କେହି ପ୍ରକୃତି ସୌନ୍ଦର୍ଯ୍ୟରେ ବିମୋହିତ ଓ ମଣିଷ ଜାତିର ଦୁଃଖରେ ବିଚଳିତ । ଏହି ଉଭୟ ଭାବକୁ ନିଜ କବିତାରେ ଲେଖିବା ପାଇଁ ଗୃହୀତ । ଯେପରି —

କବି ହେବାପାଇଁ ବାସନା ମୋର
ଦିବସ ରାତିରେ ଦିବସ ରାତି
ମୁଗ୍ଧ କିଶୋର ଅଳଟି ପଣ
ଅନ୍ତର ତଳେ ଆବେଗ ଧର
ଉଠଇ ମାତି ମୁଁ ଉଠଇ ମାତି
ଫୁଲାଏ କୁସୁମ ବୁକୁର ରସ
ଜୋଚ୍ଛନା ରାତିର ଉଚ୍ଛନ୍ନ ହସ
ଶ୍ରେଷ୍ଠ ଚଇତର ଭରା ହରଷ
ଧାରା ବରଷାର ସରସା ଦାନ
ତରୁଣୀର ଲାଜ ଲାଜ ଗୃହାଣୀ
ଗୁପତ ହିଆର ରୂପ କାହାଣୀ
କୁହୁ କଳ କେକା ରସ ଗାଆଣୀ
ଅଧୀର ନଦୀର ମଦିର ତାନ
ବନ ମାଳଞ୍ଚର ଭଗନ ପ୍ରୀତି
ଗୃହକର ପୂଜା ଲଗନ ତିଥି
ମରୁ ମୂଳକର ନଗନ ଭୀତି
ଜଳ ପ୍ରପାତର ଉଚ୍ଛୁଳା ଗାନ

କୃଷାଣ କୁଳର ଜୀବନ ବ୍ୟଥା
ନାରୀ ହୃଦୟର ଗୋପନ କଥା
ବୀର ବନତାର ଜୀବନ ଜାଲା
ବାଳ ବିଧବାର ସାଧନା ଧାରା
ସବୁ ପଞ୍ଜରର ମଥିତ ପ୍ରାଣ
ସବୁରି ଲୁହରେ ସବୁରି ଲହୁ
ଅନ୍ତରେ ଆଣି କରଇ ମହୁ
ସେଇତ ମୋର ବୁକୁର ଥାଟ
କବି ହେବା ପାଇଁ ବାସନା ମୋର
ଦିବସ ରାତ୍ରରେ ଦିବସ ରାତ୍ର

ଆଜିର କବି ପାଇଁ କଳ୍ପନା ମୂଲ୍ୟହୀନ । କଠୋର ଜୀବନ ସଂଗ୍ରାମର ବିଭୀଷିକାମୟୀ ବାସ୍ତବସ୍ଥିତି ଭିତରେ କଳ୍ପନାର ସ୍ଥାନ ଆଦୌ ନାହିଁ । ସ୍ୱପ୍ନର ପରୀମହଲ ରଚନା କରିବା ବିଡ଼ମ୍ବନା ମାତ୍ର । ଚତୁର୍ଦ୍ଦିଗରେ କେବଳ ରୁକ୍ଷ ବାସ୍ତବତା ଭିତରେ ସ୍ୱପ୍ନର କୋମଳ ସାଧନା ବ୍ୟର୍ଥ । ତେଣୁ ସଚ୍ଚିଦାନନ୍ଦ ରାଉତରାୟ ଲେଖିଛନ୍ତି —

ଜୀବନ ବାସ୍ତବ ରଣେ ସପନର କୋମଳ ସାଧନା
ଆଜଠୁଁ ସମାଧି ନେଲା ତୁମ ସାଥେ ହେ ମୋର କଳ୍ପନା

ଏଇ ଦୁଃଖଦ ବାସ୍ତବ ସ୍ଥିତି ଭିତରେ କବିଙ୍କ ମନରେ ନୂତନ ଭାବ ଜାଗି ଉଠେ । ସେ ଏକ ନୂତନ ଯୁଗର ସନ୍ଧାନୀଙ୍କୁ ଅଭିନନ୍ଦନ ଜଣାନ୍ତି । ତୋଫାନ ପରି ଦୁର୍ନିବାର ଗତି ତାଙ୍କର, ତୋଫାନ ପରି ସେ ସବୁକୁ ଭାଙ୍ଗି ଚୁରି ଦେବ ।

ଗତିର କବିତା ଗାଇବି ପୁଲକେ
ମନର ସ୍ମରଣ ମୋର
ରୁଦ୍ର ବିବେଗ ଆଜ ଦେଖେ ବିସ୍ମୟେ
ପ୍ରଗତିର ହିଲ୍ଲୋଳ
ଆସିବ ନୂତନ କ୍ରାନ୍ତି
ସୂର୍ଯ୍ୟ ସମାନ ସୃଷ୍ଟି କରିବ ନବଯୁଗ ସନ୍ଧାନୀ
— ସଚ୍ଚି ରାଉତରାୟ; ସନ୍ଧାନୀ

ଏଇ ନୂତନ ଯୁଗର ବାର୍ତ୍ତା ଆଣିଲା ବେଳେ ସେ ପ୍ରଥମେ ଲକ୍ଷ୍ୟ କରିଛି ଯେ ସମାଜରେ ଯେଉଁ ଦୁଃସ୍ଥିତି ଦେଖା ଦେଇଛି ତାହା ଭଗବାନଙ୍କ ଦ୍ୱାରା ସୃଷ୍ଟ ନୁହେଁ ବା ଆଜି ପର୍ଯ୍ୟନ୍ତ ଭଗବାନ ମଣିଷକୁ ସକଳ ଦୁର୍ଗତିରୁ ମୁକ୍ତ କରନ୍ତି ବୋଲି ଯେଉଁ ଧାରଣା ଥିଲା ତାହା ବଦଳି ଯାଇଛି । ତେଣୁ ଆଜିର କବି ପ୍ରଥମେ ଭଗବାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛି । ସେ ସ୍ପଷ୍ଟ ଅନୁଭବ କରିଛି ଯେ ଭଗବାନ ମଣିଷକୁ ସାମାଜିକ ଦୁର୍ଗତିରୁ ରକ୍ଷା କରିବା ନିମିତ୍ତ ଅସମର୍ଥ । ଭଗବାନଙ୍କୁ ଆଗରୁ ଲୋକେ ସକଳ ଦୁଃଖର ତ୍ରାଣକର୍ତ୍ତା ବୋଲି ଡାକୁଥିଲେ —

ଭଜମନ ସବୁରି ଦୁଃଖହର ହରିଙ୍କି
ହରି କରିବେ ଭବୁ ପାରିକ ହେ ପାରିକ
ତୋ ପଦ୍ମୀ ଦାଣ୍ଡଦ୍ୱାରେ
ସକାଏ ସୋପାନରେ
ଧନ ରହିବ ଘରେ ଯିବୁ ଅମର ପୁରେ
ଅରଜ ଭବ ଗୁଣ ଶିରିକ ଏ ଶିରିକ
ଭଜମନ ; ସବୁରି ଦୁଃଖହର ହରିଙ୍କି

ସେତେବେଳେ ମୃତ୍ୟୁ ଓ ମୃତ୍ୟୁ ପରବର୍ତ୍ତୀ ନର୍କର କଷ୍ଟ ବ୍ୟକ୍ତି-ଚିତ୍ତକୁ ଅତି ମାତ୍ରାରେ ଆଲୋଡ଼ିତ କରିଥିଲା । ସୁଖ ଏବଂ ଦୁଃଖ ମଧ୍ୟ ଥିଲା ଭଗବାନଙ୍କର ଆଦେଶ । ତେଣୁ ସକଳ ଜାଗତିକ ଦୁଃଖରୁ ମୁକ୍ତି ପାଇବା ନିମିତ୍ତ ବ୍ୟକ୍ତି ପରମ କାରୁଣିକ ପରାତ୍ପର ପରମେଶ୍ୱରଙ୍କୁ ଡ଼ାକୁଥିଲା । ସମସ୍ତେ ଉପଦେଶ ଦେଉଥିଲେ ।

ଭଜ କନା ରାମ ନାମରେ ଗୋବିନ୍ଦ
 ଭଜ କନା ରାମ ନାମ
ଭଜ ନ ପାରିଲେ କୁଳ ଚନ୍ଦ୍ରମାରେ
 ବାନ୍ଧିନେବ କାଳ ଯମ
ସେହି କାଳଯମ ବଡ଼ ଦାରୁଣରେ
 ନ ଜାଣଇ ଦୁଃଖ ସୁଖ
ବାନ୍ଧି ନେବ କିଏ ରଖିବ ପାରିଲା
 ଦେବଟି ଦାରୁଣ ଦୁଃଖ

କୁମ୍ଭୀର ପିଠିରେ ଭରସା ବାନ୍ଧିଛୁ
ସିନ୍ଧୁ ପାର ହେବା ପାଇଁ
ଯାଉଁ ଯାଉଁ ଯମ ଦାଢରେ ପଡ଼ିବୁ
ଡର ଭୟ ମାତ୍ରୁ ନାହିଁ
ରଙ୍ଗ ସିମୂଳରେ କଦେଖି ଭୁଲିଛୁ
ଫୁଟିଲେ ଉଡ଼ିବ ତୁଳା
ଯେତେ ବୁଝାଇଲ ମାନଗୋବର୍ଦ୍ଧନରେ
ଭୁଲି ତ ହୋଇଛୁ ହେଳା
ସୁନ୍ଦରପଣରେ ନ ଭୁଲ କୁମର
ଜାଣ ମହାକାଳ ଫଳ
ସେଥିରୁ ଯୋଡ଼ାଏ ସୁରଙ୍ଗିଣି ଦେଖରେ
ଭିତରେ ପୋଡ଼ା ଅଙ୍ଗାର
—ଗୋବର୍ଦ୍ଧନଚନ୍ଦ୍ର ଗୀତ

ମାତ୍ର ଆଜିର କବି ପାଇଁ ଭଗବାନଙ୍କୁ ଡାକିବାର ଆବଶ୍ୟକତା ନାହିଁ । ବରଂ ଭଗବାନଙ୍କ ବିରୁଦ୍ଧରେ କବି ସ୍ୱର ଉତ୍ତୋଳିତ କରିଛି

ଚରମ ପତ୍ର ଦେଲି ଭଗବାନ
ଚରମ ପତ୍ର ନେଇ
ଆଗାମୀ ଚବିଶ ଘଣ୍ଟା ଭିତରେ
ଆଗାମୀ କାଲିର ଏଇ ପ୍ରଭାତରେ
ଖାଲି କର ତୁମ ଗୋଲୋକ ସିଂହାସନ
ନେଇ ଭଗବାନ ଚରମ ପତ୍ରନେଇ
ଛାଡ଼ିଦିଅ ତମ ହାତରୁ ବିଶ୍ୱ ଶାସନ ଦଣ୍ଡ ତୋର
ନହେଲେ କରିବି ନିର୍ମମେ ତୁମର ଆୟୁଷ ଶେଷ
ତମର ଛଦ୍ମ ଅନନ୍ତଗିରି ଅନ୍ତ କରିବି ସିନା
ତମ ମନ୍ଦିର ଚୂଡ଼ାରେ ଉଡ଼ିବ ମହାଧ୍ୱଂସର ବାନା
ବେଳ ଥାଉଁ ଥାଉଁ ଖାଲି କରିଦିଅ
ଗୋଲୋକ ସିଂହାସନ
ନେଇ ଭଗବାନ, ଚରମ ପତ୍ର ନେଇ
—ଚରମ ପତ୍ର, ରବି ସିଂ

କାରଣ ଆଜ ଦୁଃଖ ଦୈନ୍ୟ ଯାତନାରେ ସମଗ୍ର ବିଶ୍ୱ ଅନ୍ଧକାର ଓ ଏହି ସୃଷ୍ଟିକୁ ଦେଖିବା ପାଇଁ ଭଗବାନ ଅସମର୍ଥ । ତାଙ୍କର ଚକ୍ଷୁ ଫୁଟି ଯାଇଛି । ସେ ଅନ୍ଧ ହୋଇଛନ୍ତି । ବରଂ ଈଶ୍ୱରଙ୍କ ଲାଗି ସମାଜରେ ଭଣ୍ଡାମି ଚାଲିଛି । ସତେ ଯେପରି ଭଣ୍ଡାମିର ଭଣ୍ଡ ଭିତରେ ଈଶ୍ୱରଙ୍କର ସତ୍ତା ଅବଲୁପ୍ତ । ଈଶ୍ୱର ଯଦି ଥାଆନ୍ତେ ତେବେ ମଣିଷ ଏତେ ଦୁଃଖ ଭୋଗ କରନ୍ତା ନଥାନ୍ତା । ତେଣୁ କବି ଗାଇଛନ୍ତି । —

ବିଶ୍ୱ ଆଜ ଅନ୍ଧକାର କେଉଁଠି ତୁମେ ଈଶ୍ୱର ହେ ଈଶ୍ୱର
ଚକ୍ଷୁ ତୁମ ନେଲା କି କାଢ଼ି ତୀକ୍ଷ୍ଣ ଅସି ଦସ୍ୟୁର
ଅଷ୍ଟ ଘାଟ ମହୋଷୀ ଧବ
କାହାର ଗଦା ବନ୍ଦ କଲା ଚନ୍ଦ ତବ
ତାଲିମ ହଆ ଜାଲିମ ଖୋଜେ ଅନ୍ତନାଡ଼ ନିଃସ୍ୱର
କେଉଁଠି ତୁମେ ଈଶ୍ୱର ହେ ଈଶ୍ୱର
ଭଣ୍ଡାମିର ଭଣ୍ଡେ କି ହେ ଲୁପ୍ତ ତୁମ ସତ୍ତା
ତାହିଁ ହେଲେ ଆଜ ଫାଟୁରେ ଫାଟୁ
ଲୋଟୁରେ ଲୋଟୁ
ଭଣ୍ଡାମିର ଭଣ୍ଡରେ
ଏଇ ଦୁନିଆର ଦାଣ୍ଡରେ

କାରଣ ଏଇ ସମାଜରେ ସୁଖ ଶାନ୍ତି ପ୍ରତିଷ୍ଠା କରିବା ନିମିତ୍ତ ଈଶ୍ୱରଙ୍କର କ୍ଷମତା ନାହିଁ । ଏଣୁ ତାଙ୍କୁ ଡ଼ାକିବା ନିଷ୍ପ୍ରୟୋଜନ । ଅନ୍ଧ ଭକ୍ତି ଅନାବଶ୍ୟକ ଧୂପ ଦୀପ ନୈବେଦ୍ୟ ଦେବା ନିଷ୍ପ୍ରୟୋଜନ ।

କାହିଁକି ଦେବି ମୁଁ ତୁମ ପଦେ କହ
ଧୂପ ଦୀପ ନଇବେଦ୍ୟ
କାହିଁକି ଡାକିବି ତୁମକୁ ମୁଁ ଈଶ୍ୱର
ବିପ୍ଳବୀ ଚିର ସଂଗ୍ରାମୀ ପ୍ରାଣ ଅଟଇ ଅନବଦ୍ୟ
ବନ୍ଦନା ଗୀତ ଗାଇବାର ନାହିଁ ଫଳ ତମ ବିଶ୍ୱର

ପୁନଶ୍ଚ ହୁଏତ କେବଳ ଅଭ୍ୟାସ ବଶତଃ କେହି ଦେବତାଙ୍କର ଆବାହନ କରନ୍ତି ଓ ତାହା କେବଳ ଜୀବନକୁ ସୁଖକର କରିବା ନିମିତ୍ତ ନୁହେଁ । ତେଣୁ କବି ଗାଆନ୍ତି—

ଧର୍ମ ଧାରଣା ଧରଣୀ ଭୁଲିଛି
କର୍ମ କଷଣ ହୋଇନ ଶେଷ
ଦୁର୍ମତି ମୋହେ ଧଳା କଳା ହୁଏ
ସିଂହର ଶିଶୁ ପାଲଟେ ମେଷ
ମହାପାପ ଯେ ମାର ନେଇଥାଏ
ଜଳ ଜଳ କରି ଜଳକା ଗୁହେଁ
ରାଜନୀତି ନାମେ ବାଜନୀତି ଗୁଲେ
ଗୁଣ୍ଟି କାର ଆଜ ଆଦର ପାଏ
କୁଳବଧୂ ନାରୀ ଲଲାଟ ପଟରେ
ବାରନାରୀ ପଦ ଏବେ ବା ଲେଖା
ଅଜ୍ଞାନତାର ଧ୍ୱାନ୍ତ କୁହେଳି
ହଟିନ ସରଣୀ ନଯାଏ ଦେଖା
ତୁମେ ଦୁର୍ଗତିନାଶିନୀ ଦୁର୍ଗେ
ପ୍ରୀତି ପାବନେ ଆସଗୋ ଆସ
ବଡ଼ ଅସହାୟ ଆଜର ମଣିଷ
ହୃଦୟୁଛି ତାର କଳୁଷ ନାଶ

—ଦୁର୍ଗତିନାଶିନୀ, ତୁଳସୀ ଦାସ

## ବନ୍ୟା

ବଡ଼ ଠାକୁରହେ ବଡ଼ ଦାଣ୍ଡରେ ବଡ଼ସିଂହାର ବେଶେ
ସଜେ ଯେତେବେଳେ
ଆସିଛ ପ୍ରଖର କରାଳ ବନ୍ୟା ବେଶେ
ସବୁଜ କେଦାର ସାଜିଛି ଶଳକା
ନବଗଡ଼ କପାଳେ ଲୁଡଛ କ ଶିକା
କେତେ ଘର ବାଡ଼ ନଈ ନାଳ ଖାଇ
ପ୍ରାଣ ପିଏ ଅବଶେଷେ
ବଡ଼ ଠାକୁର ହେ ଆସିଛ ଆସିଛ
କରାଳ ବନ୍ୟା ବେଶେ

ପେଟ ବିକଳେ କେ ଖାଏ ପଥର
ମହା ଧନବାନ୍ ହଅଇ ଛତର
ଘୁଣ୍ଡିରେ ପଥର ଲଦାଲା ପରାଏ
ଯାତନା ବିବେକ ଠେସେ
ବଡ଼ ଠାକୁର ହେ ଆସିବ ଆସିବ
କରାଳ ବନ୍ୟା ବେଶେ

ଦେବତା ଆସନ୍ତି ଏ ଧରାକୁ କାଳେ ମଣିଷର ଦୁଃଖ ଦେଖିବା ପାଇଁ ।
ବରଷକୁ ଥରେ ଦୁର୍ଗା ଆସନ୍ତି ମଣିଷକୁ କଷ୍ଟ ଦେବା ପାଇଁ ।

ଦିନ ଦିନ ଆଉ ମାସ ମାସ ଖାଲି
ଆମେ ରହିଥାଉ ଭୁହିଁକ
ବରଷକେ ଥରେ ତୁମର ଆସିବା ପାଇଁକି
ମଦ ମଦ ଭରେ କମ୍ପୁଛି ଧରା
ନ୍ୟାୟ ନୀତି ଆଜି ବନ୍ଦୀ
ପୁଞ୍ଜିପତିରେ ପରିବେଷ୍ଟିତ
ରକ୍ତ ଢାଳୁଛି କାନ୍ଦି
କାରଖାନା ତଳ ଶ୍ରମିକ ନଫର
କ୍ଷେତ ଖମାରର ମୂଲିଆର ଦଳ
ଶାସନ ଯନ୍ତ୍ର ଭିତରେ ଦେଖୁଛି ତୁମର ଶୋଷଣ ଫନ୍ଦା

—ଗୋଦାବରୀଶ ମହାପାତ୍ର

ତେବେ ମୋଟ ଉପରେ ଆଜି ଭଗବାନ ମଙ୍ଗଳମୟ ନୁହନ୍ତି । ଭଗବାନଙ୍କର ମଧ୍ୟ ମତି ବିଭ୍ରମ ଘଟିଛି । ସେ ନିଜ କାମ ଛାଡ଼ି ଅନ୍ୟ କାର୍ଯ୍ୟରେ ବ୍ୟସ୍ତ । ବ୍ରହ୍ମା ହେଉଛନ୍ତି ସୃଷ୍ଟିକର୍ତ୍ତା । ସେ ସଂଯମ ଓ ବୈରାଗ୍ୟର ପ୍ରତୀକ । ମାତ୍ର ଆଜି ସଂଯତେନ୍ଦ୍ରିୟ ବ୍ରହ୍ମା କାମିନୀ କାଞ୍ଚନର ଲୋଭରେ ପଡ଼ି ସୁନ୍ଦରୀ ତରୁଣୀମାନଙ୍କ ପାଖକୁ ଚିଠି ଲେଖୁଛନ୍ତି । ଶିବ ହେଉଛନ୍ତି ଭୋଳାନାଥ । ସେ ସବୁ ଐଶ୍ୱର୍ଯ୍ୟକୁ ପରିତ୍ୟାଗ କରି ଖଣ୍ଡେ ଚର୍ମ ବସନ ଧାରଣ କରି ଶ୍ମଶାନରେ ବାସ କରିବା କଥା । ମାତ୍ର ସିଏ ଆଜି ବସି ଧାନ ଓ ଧନ ପଛରେ ଗୋଡ଼ାଉଛନ୍ତି । ଦେବତା ମାନଙ୍କର ଚିକିତ୍ସକ ହେଉଛନ୍ତି ଅଶ୍ୱିନୀ କୁମାର କିନ୍ତୁ ସେହି ଅଶ୍ୱିନୀ କୁମାର ଦୁରାରୋଗ୍ୟ ଯକ୍ଷ୍ମା ରୋଗରେ ପଡ଼ିଛନ୍ତି । ତେଣୁ କବି ଲେଖୁଛନ୍ତି —

ବ୍ରହ୍ମା ଆଜି ବସି ଲେଖୁଛନ୍ତି ପ୍ରେମଚିଠି
ମହାଦେବ ଭୋଗୁଛନ୍ତି ଧାନଧାର କୋଠି
ଅର୍ଣ୍ଣିମା କୁମାର ଛନ୍ଦ ସଂସ୍ଥା ଯୋଗେ ପଢ଼
କହ ଏହା କେଉଁ କଥା ଜ୍ୟୋତିଃଶାସ୍ତ୍ରପଣ୍ଡ ।

—ରବି ସିଂ

ଏଭଳି କ୍ଷେତ୍ରରେ ଭଗବାନ ମଣିଷର କି ମଙ୍ଗଳ କରିବେ ? ଭଗବାନଙ୍କ ଆଖି ଆଗରେ ମଣିଷ ମଣିଷ ପରି ବଞ୍ଚି ପାରୁନ । ପେଟରେ ଭୋକର ନିଆଁ ଜଳୁଛି । ଦରିଦ୍ର ରିକ୍‌ସାବାଲା ମାତ୍ର ଟଙ୍କା ଅର୍ଜ୍ଜନ ପାଇଁ ଯାଇ ତା ଦେହର ରକ୍ତ ବିକୁଛି ବା ଅନ୍ନବାହୃତ ଯୁବକ ଜନ୍ମନିରୋଧ ନିମିତ୍ତ ଅସ୍ତ୍ରୋପଚାର ହେଉଛି କୋଇଟା ଟଙ୍କା ପାଇଁ । କବି ଲେଖୁଛନ୍ତି —

ଭଗବାନ କେବେଁ କରନ୍ତୁ କଳ୍ପନା
ଜନନୀ ଭଗିନୀ କନ୍ୟା ଲଳନା
ତୁମ ସୃଷ୍ଟିର ବଜାରେ ପଣ୍ୟ ରୂପେ
ବିକ୍ରୟ ହେବା ?

ଜଠରେ ଜଳେ ବା କ୍ଷୁଧାର ଅନଳ
ଝର ମାଂସ କେ କିଣେ ପଲ ପଲ
କିଏ ଗଡ଼ି କିଏ ସଡ଼କ ତଳ ତଳ
ତୁଳୀ ପରେ କାଳ ଯାଏଣ ଆଙ୍କିନା
କିଏ ଖୋଜି ବୁଲେ ହଜମି ବଟିକା
ଚନ୍ଦ୍ରରେ ଚନ୍ଦ୍ରରେ ଶୋଷଣ ସାଞ୍ଜୁ ଝୁଲେ
ମୃତ୍ୟୁର ପଦେ ଜୀବନର ତାଜ ଟଳେ

—ଚରମପତ୍ର; ରବି ସିଂ

କମ୍ପା

କାହିଁ ଭଗବାନ କାହିଁ ବା ସ୍ୱର୍ଗ କକ୍ଷ
କାହା ପାଇଁ ବସି ଗଡ଼ାଅ କାଷ୍ଟ ମାଳ
ପୃଥିବୀ କା ପାଇଁ କରିଲ ଦେଉଳମୟ
ଶ୍ରମିକ ମରେ ଯେ ଶରୀରୁ ରକ୍ତ ଢାଳ

ଭୂମିର ଆଦେଶେ ରୂପସୀ କଣୋଗ୍ନି ସିନା
ହସାଇ  ବସିଛି ସୁଖର ସଭନ ରଙ୍ଗ
କେତେ ପ୍ରେୟସୀ ଝିଅ ବରଷ ଦୁଃଖରେ ଲୀନା
କେତେ ଶିଳ୍ପୀର ଅସ୍ଥି ପଡ଼ୁଛି ଭାଙ୍ଗ
ସମାଜପଣ୍ଡିତେ ! ଧର୍ମର ବାନା ଟେକ
ନରଦେବତାର ମସ୍ତକେ ପଦ ରୂପ
ଶତ ସଂହିତା ପୁରାଣ ଗ୍ରନ୍ଥ ଲେଖି
ନିଜ ଭୋଗ ଲାଗି ମନ୍ଦିରେ ଦେବ ଥାପ ।

ଧର୍ମ କେତେକ ଧର୍ମଧ୍ୱଜୀଙ୍କର ଅଧିକାର ଭୁକ୍ତ ହୋଇଛି । ଧର୍ମ ନାମରେ କଳଙ୍କିତ ସାମ୍ପ୍ରଦାୟିକ ଗଣ୍ଡଗୋଳ ବଢ଼ି ଚାଲିଛି । ତେଣୁ ଆଜିର କବି ଭଗବାନଙ୍କୁ ଅସ୍ୱୀକାର କରି ଭଳି ଭଗବାନଙ୍କ ସମ୍ପର୍କୀୟ ସକଳ ଦର୍ଶନ ଗ୍ରନ୍ଥକୁ ମଧ୍ୟ ପୋଡ଼ି ଜାଳି ଛାରଖାର କରି ଦେବାକୁ ଚାହେଁ, ମନ୍ଦିର ମସଜିଦ୍ ଚର୍ଚ୍ଚ ନାମରେ କଳଙ୍କ ଓ ଦୁର୍ନୀତିର ପୀଠ ହୋଇ ପଡ଼ିଛି । ତେଣୁ ସେ ସବୁକୁ ଧ୍ୱସ୍ତ ବିଧ୍ୱସ୍ତ କରିବାକୁ ଚାହେଁ । ଧର୍ମ ଧାରଣାର ପରିବର୍ତ୍ତନ ଆଜିର କବିତାରେ ପ୍ରକାଶ ପାଉଛି । ଧର୍ମ ଦର୍ଶନର ଆମୂଳଚୂଳ ପରିବର୍ତ୍ତନ ତାହାର କାମ୍ୟ । ଦର୍ଶନ ଓ ଜୀବନ ମଧ୍ୟରେ ସମ୍ପର୍କ ଅଭେଦାଭେଦ ସମ୍ପର୍କ । ଦର୍ଶନ ବିକାଶ ସଭ୍ୟତାର ବିକାଶକୁ ହିଁ ବୁଝାଇଥାଏ । ପୁନଶ୍ଚ କାବ୍ୟ ଓ ଦର୍ଶନର ସମ୍ପର୍କ ମଧ୍ୟ ଅତି ନିବିଡ଼ । ତେଣୁ ଆଜିର କବିତାରେ ଏକ ନୂତନ ଦର୍ଶନର ବାଣୀ ପ୍ରକାଶିତ । ଏହି ଦର୍ଶନ ବ୍ୟକ୍ତି କୈନ୍ଦ୍ରିକ ନହୋଇ ସମାଜ କୈନ୍ଦ୍ରିକ । ଏହି ଦର୍ଶନ ଜନବାଦୀ, ଗଣତାନ୍ତ୍ରିକ ସମାଜ କୈନ୍ଦ୍ରିକ ସମାଜର । ତେଣୁ କବି ଏକ ନୂତନ ସଂଘର୍ଷର ସ୍ୱରକୁ ନିଜ ଲେଖନୀରେ ଫୁଟାଇଛନ୍ତି । —

ଈଶ୍ୱର ସେ ଈଶ୍ୱର କେ ?
କି ଯାଏ ଆସେ ତାହାର ସାଥେ
ତାହାର ଲାଗି ଅନ୍ନ ଜଳ
ଭୁଲୁରେ କଅାଁ ରକ୍ତ ହାତେ
ବନ୍ଧ କର ଶଙ୍ଖଧାର
ପାଶ୍ୱେ ତୋଳୁ ଝିଙ୍କ କାର

କଳ୍ପନାର ପ୍ରତିମା ପାଶେ
ପୂଜନ ଉଚ୍ଚ ଫଳ ପ୍ରାତେ
× × ×

ସବଂହରା ବଂଶୀ ଭୂରେ
ବଞ୍ଚିତ ଭୁ ସକଳ ଧନେ
ଖୋଜୁରେ ବୃଥା ଜୀବନ କଥା
ଦେଉଳ ତଳେ ଶୂନ୍ୟମନେ
ଶିଳାରେ ପିଟୁ ମୁଣ୍ଡ ଖାଲି
ଯାତ୍ରା ପଥେ ତପ୍ତ ବାଲି
ନାହିଁରେ ନାହିଁ ଶୀତଳ ଛାଇ
ଦେବତା ନାହିଁ ଭୁବନବନେ
— ଅନନ୍ତ ପଟ୍ଟନାୟକ

ଜମ୍ମା

ମନ୍ଦିର ଆଉ ମସଜିଦ ଚୂଡ଼ା
ଧୂଳିସାତ୍ କର ଗୀର୍ଜା ପାଗୋଡ଼ା
ବାଇବେଲ୍; ବେଦ; କୋରାନ୍ ପରେ
ସଂଯୋଗ କର ବହ୍ନି
ଶୃଙ୍ଖଳ ପ୍ରେତ ଆତ୍ମା ଜାଗରେ
ନାସ୍ତିକତାର ବହ୍ନି
ଚଣ୍ଡୀ ଅଧରେ ଚୁମ୍ବନ ହୋଇ
ଛିନ୍ନ କରରେ ଆଜି ଭଗବତ୍ ଗୀତା
ଜାଗ ମହାକାଳ କରେ ଧରି ଶୂଳ
ଧ୍ୱଂସର ସହିତା ।
—ଅନନ୍ତ ପଟ୍ଟନାୟକ

ପୁରୁଣା ଧର୍ମ ବ୍ୟବସ୍ଥାକୁ ଭାଙ୍ଗି ପାରିଲା ପରେ କବି କେବଳ ସେତିକିରେ ଅଟକି ଯାଇନାହାଁନ୍ତି । ସେ ଏକ ନୂତନ ଧର୍ମ ପ୍ରତିଷ୍ଠା କରିବା ପାଇଁ ଚାହାଁନ୍ତି । ଏହି ଧର୍ମରେ ଉଚ୍ଚ ନୀଚ ଭେଦଭାବ ରହିବ ନାହିଁ । ସ୍ପୃଶ୍ୟ ଅସ୍ପୃଶ୍ୟର ଫରାକ୍ ରହିବ ନାହିଁ । ଧର୍ମରେ କାହାର ନିର୍ଦ୍ଦିଷ୍ଟ ଅଧିକାର ରହିବ ନାହିଁ । ଯାହା ଫଳରେ

ଧର୍ମ ନାମରେ ଶୋଷଣ ପୀଡ଼ନ ଅତ୍ୟାଚାରର ଅବକାଶ ରହିବ ନାହିଁ । କବିଙ୍କର ଏହି ଚିନ୍ତାକୁ ବହନ କରି କବିତା ସଜୀବ ହୋଇଛି । କବି କାଳନ୍ଦୀଚରଣ ପାଣିଗ୍ରାହୀ ତାଙ୍କର ଆଗାମୀ କବିତାରେ ଲେଖିଛନ୍ତି —

କବିତା ରଚେ ପୁଣି ନୂତନ ଧର୍ମର
ଘୂଚିବ ଧାଁ ହୁଏ ପୁଣି ବିଶ୍ବ ଅପାମର
କାହାରି ସେ ଧରମେ ନାହିଁଟି ଭିଜେ ଦାଗ
ପଢ଼ିବ ମଥା କୋଡ଼ି ମରିବ ଭୟେ ଭାବ
କହଇ ସେ ଧରମ ସହଜ କରି କଥା
ଆଲୋକ ବାୟୁ ସମ ଆଣଇ ସ୍ୱାଧୀନତା
ଉଚ୍ଚ ଅଟେ ଯାହା ରହିଛି ସେ ବା ନୀଚ
କେତେ ବା ସତ ତହିଁ କେତେ ବା ତୁଚ୍ଛା ମିଛ
ସକଳ ସତ ତହିଁ ଉଠଇ ମଥା ଟେକ
ସେହି ସେ ଧର୍ମର ଗାଥା ମୁଁ ବସେ ଲେଖି
ମିଛରେ ଗଢ଼ା ଯାହା ପଡ଼ିବ ଯେବେ ଭାଙ୍ଗ
ଆଗାମୀ ସେ କାଳର କବିତା ରଚେଁ ଆଜ

ଆଗାମୀ ନୂତନ ଯୁଗ ନୂତନ ସମାଜ ସୁସ୍ଥ ସୁନ୍ଦର ସମାଜ ହେବ । ତେଣୁ ତା ପୂର୍ବରୁ କବି ୩ଟି କଥା କହିଅଛନ୍ତି । ପ୍ରଥମତଃ ଚଳନ୍ତି ସମାଜର ବ୍ୟବସ୍ଥାକୁ ଭାଙ୍ଗି ଦେବାକୁ ଚାହିଁଛନ୍ତି ; ଦ୍ୱିତୀୟତଃ ଚଳନ୍ତି ସମାଜର ଦୁରବସ୍ଥାର ସ୍ୱରୂପ ଓ କାରଣମାନ ନିର୍ଣ୍ଣୟ କରିଛନ୍ତି । ତୃତୀୟତଃ ଜାତୀୟତା ଭାବରେ ଉଦ୍‌ବୁଦ୍ଧ ହେବା ଓ ଅତୀତର ଜନ ନେତାଙ୍କର ମହିମା ଗାନ କରିବା ପାଇଁ ଯାଇଛନ୍ତି; ଏହି ବିବିଧ ସ୍ତରରେ ଆଧୁନିକ କବିର ସମାଜ ଚେତନା ପ୍ରକାଶ ପାଇଛି । ବ୍ୟକ୍ତିଗତ ଦୁଃଖ ତୁଳନାରେ ସାମାଜିକ ଦୈନ୍ୟ ମୁଖ୍ୟ ଭାବରେ ପ୍ରକାଶ ନିମିତ୍ତ ଚେଷ୍ଟା କରିଯାଇଛି । ତେଣୁ ଆଜିର କବି ବଜ୍ର ନିର୍ଘୋଷ ସ୍ୱରରେ ବିପ୍ଳବ, ଝଡ଼, ତୋଫାନ ଧ୍ୱଂସ ଆଦିର ରୁଦ୍ରକରାଳ ରୂପ ନେଇ ଆହ୍ୱାନ କରିବାକୁ ଆସିଛି ।

ଶାନ୍ତିର ଶିଖା ମୁହିଁ ଜାଳିବିରେ ଜାଳିବି
ବେଦନାର ହିମାଦ୍ରି ଟାଳିବିରେ ଟାଳିବି
ଆଶାର ଆଲୋକ ଖରେ ଜଳାଇ
ଧ୍ୱାନ୍ତର ଗଡ ମୁହିଁ ଜିଣିବିରେ ଜିଣିବି

ମମତାର ମନ ମାନ କଣିବରେ କଣିବ
ଝଗଡ଼ାକୁ ଭାଙ୍ଗି ଯିବ ପକାଇ
ବଂଧନ ବିଭେଦ ମୁଁ ନାଶିବରେ ନାଶିବ
ବିନାଶର ତରଣୀରେ ଭାସିବରେ ଭାସିବ
ସତ୍ୟର ପଥ କରି ରଚନ
ପ୍ରୀତି ଆନନ୍ଦରେ ହସ ଭରିବରେ ଭରିବ
ଜଗତ ଜନର ବ୍ୟଥା ହରିବରେ ହରିବ
ବିଶ୍ୱାସ ବୀଜ କରି ବପନ
ଅଙ୍କୁରା କେତେ ମୁଁ ଯେତେ ଲେଖିବରେ ଲେଖିବ
ଅଶ୍ରୁର ଦରଦ ମୁଁ ପୋଛିବରେ ପୋଛିବ
ବିଶ୍ୱଭାତୃ ଦେବ ତାଳ ଗୋପନେ
ସମତାର ସ୍ରୋତ ଦେବ ବୁହାଇରେ ବୁହାଇ
ଅମାନ୍ତର ମଥା ଦେବ ନୁଆଁଇରେ ନୁଆଁଇ
ଆଶ୍ୱାସ ଭରି ଦେବ ସପନେ
ସମର ଶିବରେ ନିଆଁ ଜାଳିବରେ ଜାଳିବ
ବିଘ୍ନର ମହାମେରୁ ଟାଳିବରେ ଟାଳିବ
ଛଳେ ହେଲେ ନହେବ ମୁଁ କାତର
ଛାତି ପାତି ସବୁ ଦାଉ ସହିବରେ ସହିବ
ଦେଶଲାଗି ଦେହକୁ ମୁଁ ଦହିବରେ ଦହିବ
ବଡ଼ମାରେ ନଦେଖାଇ ଗୁମର

— ତୁଳସୀ ଦାସ

କମ୍ପା

ମୁଁ ଯଦି ଜଳିବ ସବୁକୁ ଜାଳିବ
ମୁଁ ଯଦି ଟଳିବ ସବୁକୁ ଟାଳିବ
ମୁଁ ଯଦି ମରିବ ସବୁକୁ ମାରିବ
ମୁଁ ଯଦି ସରିବ ସବୁକୁ ସାରିବ
ମୁଁ ଗୋଟିଏ ଖାଲି ଶାଣିତ ଖଡ୍‌ଗଧାର
ଖସି ଯିବା ନୁହେଁ କେବେ ସମ୍ଭବପର

ଏଇ ସମାଜର ରଥଚକ ତଳେ
ଅକାଳେ ମରି ଯେ
ପୁନର୍ଜନ୍ମ ନେଇଛି ମୁଁ ଆଜ
ନେଇଛି ବରରେ
ମତେ ଜାଳ ଦେଇ ଖସିଯିବା ନୁହେଁ
କେବେ ସମ୍ଭବପର

— ଅନନ୍ତ ପଟ୍ଟନାୟକ

ଆଧୁନିକ କବିର ଏହି ଦାମ୍ଭିକତା ଦେଖି ହୁଏତ କେହି କେହି ହସୁଥିବେ । କାରଣ ଏମିତି କବିତା ଚ୍ଛୋଟ ମାରିଲେ କି କେବେ ବଦଳି ପାରିବ ଧରି ? ଖାଲି କବିତାର ଝଡ଼ ଦେବନାହିଁ ହାଅନ୍ନ ଚିତ୍କାର କରୁଥିବା ବଭୂକ୍ଷ ବ୍ୟକ୍ତିର ମୁଖରେ ମୁଠାଏ ଅନ୍ନ । ତେଣୁ ଏହି ଧରଣର କବିତାକୁ ହୁଏତ କେହି କେବଳ ନିଜେ ନିଜର ବନ୍ଦନା କରିବା ବା ନିଜ ମହିମା ଗାନ କରିବା ସଙ୍ଗେ ତୁଳନା କରୁଥାଇ ପାରନ୍ତି । କିନ୍ତୁ କବି କହିଛନ୍ତି ଯେ ମୋ କବିତା ଶୁଣି ତୁମେ ଘୃଣା ଏବଂ ଉପହାସରେ ନାସିକା କୁଞ୍ଚନ କରୁଛ । କିନ୍ତୁ ମୁଁ ପୀଡ଼ିତ ମାନବ ଜାତିର ମର୍ମବାଣୀକୁ କି ମୋ କବିତାରେ ରୂପଦେଇ ନାହିଁ କି ? ମୁଁ ଆଜ ଧ୍ୱଂସ କରିବାକୁ ଆସିଛି । ମୁଁ ଆଜ ପଶୁର ବଳ ନେଇ ଆସିଛି ସେଇମାନଙ୍କୁ ମାରି ନିପାତ କରିବାକୁ ଯେଉଁମାନେ ମୋ ପରି ନିଃସ୍ୱ ସର୍ବହରାର ମାନବିକ ଅଧିକାରକୁ ଗ୍ରେଫ୍ କରି ନେଇଛନ୍ତି । ଆଜ ଆଇନ ନାଁରେ ମଣିଷ ମଣିଷକୁ ଶୋଷଣ କରୁଛି । ମଣିଷ ମଣିଷକୁ ଅତ୍ୟାଚାରଣୀକାର ହୋଇଛି । ତେଣୁ ଏହି ଅତ୍ୟାଚାରର ପରିସମାପ୍ତି ଘଟିବ ଯେତେବେଳେ ଶୋଷକକୁ ଠିକ ଠିକ କରି ମାରି ଦିଆଯିବ । ସମାଜ ବିରୋଧୀ ମୁନାଫାଖୋର ସୁବିଧାବାଦୀ ପ୍ରଜାଶୋଷକମାନଙ୍କୁ କବର ଦେବା ପାଇଁ କବି ଆଜ ଆହ୍ୱାନ କରୁଛନ୍ତି । ମାନବିକତା ଆଜ ନାହିଁ । ଆଜ ମଣିଷ ପାଖରୁ ମାନବିକ ସ୍ନେହ, ମମତା, ଭ୍ରାତୃତ୍ୱ ଆଶା କରି ହେଉନି । ମଣିଷ ପାଖରେ ଦୟା ନାହିଁ କ୍ଷମା ନାହିଁ ସ୍ନେହ ନାହିଁ ସଦ୍ଭାବ ନାହିଁ ସହାନୁଭୂତି ନାହିଁ ସମ୍ବେଦନଶୀଳତା ନାହିଁ । ଧନୀ ଦରିଦ୍ରର ଦୁଃଖ ବୁଝୁନାହିଁ । ଡାକ୍ତର ରୋଗୀର କଷ୍ଟ ବୁଝୁନାହିଁ । କର୍ମଚାରୀ ପ୍ରଜାର ଅଭାବ ଓ ଆପତ୍ତି ବୁଝୁନାହିଁ । ସମସ୍ତେ ସ୍ୱାର୍ଥାନ୍ଧ । ଗୁଡ଼ାଏ ଝିଣ୍ଟିକା ମାରି ଗୋଟିଏ ବଣି ପୋଷି ହୋଇ ଚାଲିଛି । ତେଣୁ ଏ ବ୍ୟବସ୍ଥାକୁ ଭାଙ୍ଗି ଦେବାକୁ ଆଜର କବି ଚାହିଁଛି । ସେ ଲେଖିଛି —

ଯୁଗ ଯୁଗ ଧରି ଏକଜୁଟ ହୋଇ
          ମତେ ପଶୁ ଥିଲ ମାରି
ଷଣ୍ଢା ଚମ ମୋର ଖାଇଥିଲ ପଶୁ
          ପୋକ ପରି କରି ପାଳି ?
ମଣିଷ ଯେ ଥିଲା ଭବରେ ମୋ ବନ୍ଧୁ
          ହତ୍ୟା କଲ ତ ତାରେ
ଖୁଣୀ ପରି ତୁମ ନିୟମ ବିଧାନ
          ଇସ୍ପାତ ଅସି ଧାରେ
ଜୀବନ୍ତ ମୋର ସବୁ ଅନୁଭୂତି
          ଦେଇଥିଲ ପଶୁ ଦଳି
ପ୍ରତିଶୋଧ ତାର ନେବା ପାଇଁ ଆଜ
          ଆସିଛି ମୁଁ ଅବତରି ।
ଆଜ ମୁଁ ଆସିଛି ପଶୁ ନିଶାଚର
          ମଣିଷର ଦାବୀ ଲାଗି
ମଣିଷ କବରୁ ଜନ୍ମ ମୋରରେ
          ଧ୍ୱଂସେ ମୁଁ ଅନୁରାଗୀ ।

— ପଶୁ : ସଚ୍ଚି ରାଉତରାୟ

ଆଜି ପ୍ରଗତି ନାମରେ କଳା ବଜାର ଚାଲିଛି । ଲୋକଙ୍କୁ ନେତାଏ ବହୁ ଫମ୍ପା ମିଥ୍ୟା ପ୍ରତିଶ୍ରୁତି ଦେଇ ଭୋଟ ନେବା ପାଇଁ ପ୍ରତାରିତ କରୁଛନ୍ତି । ଏହି ବ୍ୟବସ୍ଥାରେ ଦୀନ ଦୁଃଖୀ ଓ ଧନୀ ଉଭୟଙ୍କୁ ଏକ ବଚନ ଭୂତ ଗ୍ରାସ କରୁଛି । ଧନୀର ଦୋଷ ବିରୁଦ୍ଧରେ ଦରିଦ୍ର ସ୍ୱର ଉତ୍ତୋଳନ କରୁ ନାହିଁ । ସମସ୍ତେ ଗୋଟିଏ ସୁଅରେ ପତର ପରି ଭାସି ଚାଲିଛନ୍ତି । କେହି ପ୍ରକୃତ ବସ୍ତୁ, ସତ୍ୟ ସମ୍ପର୍କରେ ଜାଣିପାରୁ ନାହାନ୍ତି । ତେଣୁ ଏହି ଭୂତ ବା ଡୁମ୍ବାକୁ ଛଡ଼ାଇବାକୁ କାଳିନ୍ଦୀ ଲୋଡ଼ା ଏଣୁ ଆଜିର କବିଙ୍କୁ କାଳସୀ ଲାଗିଛି । ସେ କାଳସୀ ହୋଇ ଆସିଛି ଦୁନିଆର ଡୁମ୍ବାକୁ ଘଉଡ଼ାଇବା ପାଇଁ । ହାଡ଼ର ଘାଗରା ପିନ୍ଧି କାଳସୀ ଆସି ପଣା ପାଣି ମାଗୁଛି । ଯୋଡ଼ି ନାଗରା ବାଜା ଖୁବ ଜୋରରେ ବାଜୁଛି । ପ୍ରମତ୍ତା କାଳସୀ ନାଚୁଛି । ତା ଘାଗରା ଘୋଷରି ଷୋଷରି ଧୂଳି ଉଡ଼ାଉଛି । ମମତାର ମହା-ମଡ଼କରେ କ୍ଷମତାର ନିଶା ଲୋକଙ୍କୁ ଘାରି ଚାଲିଛି । ମଣିଷର କୋମଳ ମନ

କ'ଣ ଲେଖୁଛି ॥

ରୋଗଗ୍ରସ୍ତ ହୋଇ ପଡ଼ୁଛି । କାଳସୀ ଶୋଷକକୁ ମାରିବ ଓ ଶୋଷିତଙ୍କୁ ତାରିବ ନିଆସି ଉପାସୀ ଉଦାସୀଙ୍କୁ ଆଶା; ଖାଦ୍ୟ ଓ ଆନନ୍ଦ ଦେବ । ଏଣୁ —

ଏଇ ନାଚେ ମୋର ଜାଙ୍ଗିଳ ବେଉସେ
କାଳସୀ ଲାଗିଲା ମତେ
ହାଡ଼େ ହାଡ଼େ ବାଜୁ ଯୋଡ ନାଗରାରେ
ଉଡ଼ୁ ଉଡ଼ୁ ଖେଳୁ ଧୂଳି ଫାଗରାରେ
ନୂଆ ସଜନୀର ସୁରର ପସରା
ଝର ଝର ପଡ଼ୁ ସାଥେ ।

— କାଳସୀ ଲାଗିଲା ମୋତେ,

ଅନନ୍ତ ପଟ୍ଟନାୟକ

ଆଧୁନିକ କବିର ସମାଜ ସଚେତନତା ଦ୍ୱିତୀୟ ପର୍ଯ୍ୟାୟରେ ସାମ୍ପ୍ରତିକ ଦୁଃସ୍ଥିତିର କାରଣ ନିର୍ଣ୍ଣୟରେ ବ୍ୟସ୍ତ । ତେଣୁ ଆଜିର କବି ସମାଜର ଦୁଃସ୍ଥିତି ନିମିତ୍ତ ଦାୟୀ ପ୍ରତ୍ୟେକ ସତ୍ତ୍ୱକୁ ବ୍ୟଙ୍ଗ ବିଦ୍ରୂପ କରିଛି । ଆଜିର ସମାଜ ଅର୍ଥ କୈନ୍ଦ୍ରିକ ସମାଜ । ଏ ଟଙ୍କାର ଖେଳରେ ସମସ୍ତେ ମାତିଛନ୍ତି । ଏହି ଟଙ୍କାକୁ ଲକ୍ଷ୍ୟ କରି ଆଜିର ଜଣେ କବି ଗାଇଛନ୍ତି —

ଟଙ୍କା ତୁମେ ସଳଖକୁ କର ବଙ୍କା
ଟଙ୍କା ଲାଞ୍ଚ ଅପର ନାମ
ଭୋଟ ବେଳେ କର ରାଜନୀତି ଦଳେ କାମ
ଟଙ୍କା ଅସୁନ୍ଦରୀକୁ ସୁନ୍ଦର କର ତୁମେ
ବିବାହ ବେଦୀରେ ବିକ୍ରୀ ତୁମରି ନାମେ
ତୁମେ ଚୌକସ; ତୁମେ ବର୍ତ୍ତୁଳ ତୁମେହିଁ ବର୍ଗାକାର
ଅରିକୁ ବନ୍ଧୁ, ବନ୍ଧୁକୁ ଅରି କର
ଟଙ୍କା ତୁମେଇ ସଭିଙ୍କର କାମ୍ୟ
ଦେଶଟା ଯାକରେ ଲଢ଼େଇ ଚାଲିଛି
ଆଣିବାକୁ ତୁମ ସାମ୍ୟ

— ଗୋଦାବରୀଶ ମହାପାତ୍ର

ଟଙ୍କା ଲାଗି ସବୁ ଅନୀତି ଓ ଦୁର୍ନୀତି ଚାଲିଛି । ତେଣୁ କବି ସାବଧାନ କରି ଦେଇଛନ୍ତି :—

ଦୁନିଆ ତୁ ହୁସିଆର !
କଳା କୁଣ୍ଡାର ତଳେ ତଳେ ଆଜ ଜଭ ଘୁଟେ ଜାନୁଆର
ଦୁନିଆର ଯେତେ ଧନିକ ବଣିକ ପୁଞ୍ଜିପତିର ଚର
ଯେତେ ଟାଉଟର ଦଲାଲ ସବୁତ ବାଂଧିଲେଣିରେ ଦଳ
ଜାତିର ନାଁଆରେ ଦେଶର ନାଆଁରେ ଯୁଦ୍ଧର ନାଆଁ ଜଳେ
ଯେତେ ଚୋର ଆଉ ତସ୍କର ହସେ
ବୀରର ପୋଷାକ ତଳେ

— ସଚି ରାଉତରାୟ

ଭାରତ ହେଉଛି ପୁଣ୍ୟ ଭୂମି ଆର୍ଯ୍ୟାବର୍ତ୍ତ । ମହାମାନବର ଦେଶ ଅଥଚ ଏଇଠି ଆଜ ଦାନବର ଲୀଳା ହେତୁ ଲୋକେ କଷଣ ସହୁଛନ୍ତି । ରାଜନୈତିକ ନେତୃବୃନ୍ଦ ଆଜ ମାତି ହରାଇ ବସିଛନ୍ତି । ସେମାନେ ପାପର ଗୋଟିଏ ଗୋଟିଏ ପାହାଡ଼ । ଆଉ ସେଇ ପାପାତ୍ମା ମାନଙ୍କର ପାପ ହେତୁ ଦୁଃଖ ଭୋଗ କରୁଛନ୍ତି ପ୍ରଜାଗଣ । କବି ଗାଇଛନ୍ତି —

ନବଡ଼ ପାପର ପାହାଡ଼ ତୁମେ
ଅନ୍ଧକାରର ଜନ୍ମ ଜାଗା
ସ୍ୱାଧୀନ ଯୁଗର ସୂର୍ଯ୍ୟ ସେ ଯେ
ତୁମରି ସେପାରେ ବୁଡିଲା ପରା
ତୁମରି ପାପର ଗ୍ରହ୍ରାସୂଣ ଏତେ ଯେ
ବର୍ଷ ଭୋଗିବା ହେଲା
ମହାମାନବର ଏ ମହାଦେଶେ
ମହାଦାନବର ଚାଲିଛି ଲୀଳା

— ଗୋଦାବରୀଶ ମହାପାତ୍ର

ସମସ୍ତେ କପଟତା ଆଚରଣ କରୁଛନ୍ତି । ମଦୁଆ ନିଶା ନିବାରଣ ନିମିତ୍ତ ଆନ୍ଦୋଳନ କରୁଛି । ଯାଦୁ ଯାଦୁଆ ଭଲ ହେବାର ମଲମ ବିକା ଚାଲିଛି । ଗଣିକା

ନେତ୍ରୀ ହୋଇଛନ୍ତି ବେଶ୍ୟାବୃତ୍ତି ନିରୋଧୀ ଆନ୍ଦୋଳନର—ଫଳରେ ସ୍ୱାଧୀନତାର ପ୍ରକୃତ ମୂଲ୍ୟ ଲୋକେ ବୁଝିପାରୁ ନାହାନ୍ତି । ସ୍ୱାଧୀନତା ମୂଲ୍ୟହୀନ ହୋଇ ପଡ଼ୁଛି ।

( କ ) ଯାଦୁଆ ବିକୁଛି ଯାଦୁର ମଲମ ଦେଖ
ମଦୁଆ ଧରିଛି ନିଶା ନିବାରଣ ବାନା
ଗଣିକା ସାଜିଛି ବେଶ୍ୟା ବୃତ୍ତି ନିରୋଧ ନେତ୍ରୀ
ସ୍ୱାଧୀନତା ଭାଲୁ ପଛକୁ ଅନାରେ ଅନା

— ରବି ସିଂ

( ଖ ) ଉଦର ସଂଗ୍ରାମ ତୀବ୍ର
ନିରପେକ୍ଷ ଧର୍ମ ଆଜ ଦେଶେ
ବୁଦ୍ଧ ନାନକ ଶଙ୍କରର
ରକ୍ତମାଂସ ଚତୁର୍ଦ୍ଦିଗେ ଗୁଡ଼େଲ
ଅଙ୍କ ଏଥି ବିଶେଷଜ୍ଞ
ରାମରାଜ୍ୟ ବଂଧା ନାଗଫାଶେ
ପାଣ୍ଡିତ୍ୟ ଯାଉଛି ଲୁଚି
ଶଠତାର ଘୋର ଇନ୍ଦ୍ରଜାଲେ
ବିଷଦଗ୍ଧ ଏ ସଭ୍ୟତା
ବିଦୀର୍ଣ୍ଣ ଏ ଗ୍ରାମ ସମାବେଶ
ନଗର ବକ୍ଷରେ ଉଠେ
ଚିମିଣିର ଧୂମଶିଖା ଦୂରେ
ସମାଧି ଖୋଳୁଛି ଆଜ
ପରମ୍ପରା ପ୍ରାକ୍ତନ ବିଶ୍ୱାସ
ହେ ଛବଣ ଜାନୁସ୍ୱାମୀ
ଉଭା ମୁହିଁ ତୁମ ବଜଦ୍ୱାରେ

— ଗୋଦାବରୀଶ ମହାପାତ୍ର

ଛବଣ ଜାନୁସ୍ୱାମୀ ପ୍ରତି ଆମର ଶ୍ରଦ୍ଧା କମି କମି ଯାଉଛି କାରଣ ସାଧାରଣତନ୍ତ୍ରର ମୂଲ୍ୟ ଜୀବନର ଦୁଃଖ ଭିତରେ ହଜି ଯାଉଛି । ଯୋଜନା ଉପରେ ଆସ୍ଥା ନାହିଁ, ନେତାଙ୍କ ଉପରେ ଭରସା ନାହିଁ । ଲୋକଂକ ଦୁଃଖର ଅନ୍ତ ନାହିଁ । ତେଣୁ କବି ଲେଖିଛନ୍ତି —

ଯୋଜନା ରୂପକ ପକ୍ଷାଘାତରେ
ପୀଡ଼ିତ ଆଜ ଏ ଓଡ଼ିଆ ଜାତି
ଚଉଦିଗେ ଖାଲି ଘନ ଅନ୍ଧାର
ନାହିଁତ ବର୍ତ୍ତିରେ ନାହିଁତ ବତି
ହୃତ୍‌ପିଣ୍ଡରୁ ଜୀବନର ନାଡ଼ୀ
ସ୍ପନ୍ଦନ ସବୁ ଯାଏ ଛିଡ଼ି ଛିଡ଼ି
ଦୁର୍ଦ୍ଦିନ ବେଳେ ନାହିଁ କେହି ଜଣେ କହିବ ଆହା
ହେ ମୋର ବନ୍ଧୁ ବରଷ ନୂଆ

— ରବି ସିଂ

କମ୍ବା

ଆଜତ ମଣିଷ ତଳ ପଡ଼େ ଭୋକେ
ଆଜତ ଶିଶୁର ଓଷ୍ଠରେ ଗୁଳି
ମୁହେଁ ମୁହେଁ ଖାଲି ସାମ୍ୟବାଦ ଓହୋ
ହାତୁଁ ହାତେ ଛୁରୀ ଯାଉଛି ବୁଲି
ଆଜତ ଗାଆଁରେ କାଙ୍ଗାଳ ନାଚେ
ସହରେ ସହରେ ବୋହିଲେ ଜଣ୍ଡ
ସୁନେଲି ଦିବସରେ ଲୁଣ୍ଠନ ଚାଲେ
ଫୁଲି ଫୁଲି ଉଠେ ଦସ୍ୟୁ ସାଥି

ପୁନଶ୍ଚ ଲୋକ ଶାସନର ଦୁର୍ବଳତା ପାଇଁ କବି ଲେଖୁଛନ୍ତି

ରାସ୍ତାଟା ଖୋଜୁଛି ନର୍ଦ୍ଦମା ଏଠି ଗୋ
ଗଳି ଖୋଜି ବୁଲେ ମୂତଖାନା
ମେହେନ୍ତର କହେ ମେହେନ୍ତର ଆମ
ମୁନସିପାଲଟି ଭୂତଖାନା
ଶୁଳଘର ଏଥି ପରମାନେଣ୍ଟ ଗୋ
ଟେମ୍ପରାରୀ ଗଣା କୋଠାଘର
ଟିକସ ଆଦାୟ ବେଆଇନ ତେଣୁ
ଭେଟି ବେଠି ଶୁଦ୍ଧା କାରବାର

ପଞ୍ଜାବୀଙ୍କୁ କହେ ଓଡ଼ିଶା ବାସିନ୍ଦା
ଓଡ଼ିଆଙ୍କୁ କହେ ଦୂର ପଳା
ତେଲେଙ୍ଗାଙ୍କୁ କହେ କାଞ୍ଚିଜେମା ଆଉ
ତୁମେ ହେବ ଆମ ବଡ଼ଶଳା

— ଗୋଦାବରୀଶ ମହାପାତ୍ର

ଏଥିପାଇଁ କବି କେତେବେଳେ ସର୍ବହରାର ବିପ୍ଳବ ପାଇଁ ଆହ୍ୱାନ କରି ଲେଖିଛି ;—

"ଜୀବନର ସିଂହଦ୍ୱାରୁ ଆସିଛି ଦୂତ" ନଚୁବା ଅନ୍ୟ କେତେବେଳେ ଅତୀତର ନେତା ଓ ଗୌରବକୁ ମନେ ପକାଇଛି । ଅତୀତର ସୁଦିନ ଓ ଏବର ଦୁର୍ଦ୍ଦିନରେ ଦୁଃଖିତ ହୋଇଛି । ଯେପରି ଧବଳ ଯାଉ ବାରବାଟୀ କଥା । ବାରବାଟୀ ଦୁର୍ଗ ଥିଲା ଓଡ଼ିଆର ପ୍ରାଣ କେନ୍ଦ୍ର । ଏବେ ସେଠି କ୍ଲବ ହୋଇଛି, ଧନୀମାନେ ବିଲିୟାର୍ଡ ଖେଳୁଛନ୍ତି । ଆଉ ମଦ୍ୟ ପାନ ତଥା ବିଦେଶିନୀ ନାରୀର ଦେହଭୋଗରେ ବାରବାଟୀ ପବିତ୍ରତା ହରାଇ ବସିଛି । ଅତୀତର ନବତଳ ପ୍ରାସାଦର ମନ୍ତ୍ରଣା ସ୍ଥାନରେ ଯନ୍ତ୍ରଣାର ଚିହ୍ନ ଦେଖିଛି କବି । ବୀର ବକ୍ସି ଜଗବନ୍ଧୁ ଚର୍ମ ଆଜ ବେଲୁନ ପରି ଉଡ଼ି ଯାଉଛି । ତେଣୁ ;—

ଯେତେ ନବତଳ ପ୍ରାସାଦେ ବସିଲା
ନବ ମନ୍ତ୍ରଣା ସଭା
ବିଲିୟାର୍ଡ଼ ଖେଳେ ଗଡ଼ ଗଡ଼ଯାଏ ହସ
ବୀର ବକ୍ସିର ଲୋଳିତ ଚର୍ମେ
ଶୂନ୍ୟେ ବେଲୁନ ଉଡ଼େ
ଚିତ୍ରାଳୟରେ ଚପୁଡ଼ା ହେଉଛି
ଯୁବ ଚିତ୍ତର ରସ ।
ବନ୍ଧୁରେ କେତେ ଭଞ୍ଜର ନାମରେ
କଞ୍ଚ କାଗଜେ ଫୁଟେ
ରୁଗ୍ଣ ମନର ଶଙ୍କାରେ ଝରେ ସୁଧା
କେତେ ବିଦେଶିନୀ ଉରସି ଲୋଟେ
ଏଇ ବାରବାଟୀ ପାଶେ
ସାହେବୀ ଠାଣିରେ ପ୍ରୀତି କର୍ପୂର ମୁଦା

ଜମ୍ପା

ଏବର ଦୁଃସ୍ଥିତିରେ ଅଷ୍ଟାତର ଗୋପବନ୍ଧୁ ଖୋଜେ :—

ମରୁଡ଼ି ଡ଼ାକେରେ ମରୁଡ଼ି ଡ଼ାକେ
କଳାହାଣ୍ଡିର ପାହାଡ଼ ପାଖେ
ବଲାଙ୍ଗିରର ମୁଲକ ଯାକେ
ମରୁଡ଼ି ଡ଼ାକେ
ଗିର ସଙ୍କଟେ ସେ କରପୁଟେ
ଜୀବନର କାହିଁ ମମତା ଛୁଟେ
ମରୁଡ଼ିର ମହା ଡ଼ାକରା ଛୁଟେ
ସେ କରପୁଟେ
ଏ କିଏ ଶୁଇଛି ତରୁଣ ଯୁବା
ବଟ ଗଛ ମୂଳେ ହୋଇଛି ଉବା
ବରଫଳ ପେଟେ ଖାଇଛି ଅବା
ତରୁଣ ଯୁବା
ଏ କିଏ ଶୁଇଛି ଗର୍ଭବତୀ
ଗର୍ଭ ବେଦନା ଗଭୀର ଅତି
ପେଜ ଟୋପେ ଖାଲି ଖୋଜଇ ସତୀ
ଗର୍ଭବତୀ
କର୍ତ୍ତା ବସିଛି ଆସନେ ତାର
ମାଂସ ପଲାଉ କରେ ଆହାର
ଏଆଡ଼େ ନଜର ନପଡ଼େ ତାର
ଆସନେ ତାର
ମନ୍ତ୍ରୀ ନଆସେ ଏଆଡ଼େ ଥରେ
ଭଜ ସିବ ବୋଲି ବରଷା ଜଳେ
ମରୁଛୁ ଆମେ ଯେ ପେଟବିକଳେ ବରଷା ଜଳେ
ଗୋପବନ୍ଧୁ ହେ ଗୋପନେ କାହିଁ
ଲୁଚିଛ ଏ ଦୁଃଖ ଦେଖି କି ନାହିଁ
ପୁଣି ଥରେ ଏଥି ଆସ ହେ ଧାଇଁ
ଦେଖିବା ପାଇଁ

ଆମ ଭୁଲେ ଖାଅ ସଲପ ରସ
ଅନାବନା ଶାଗ ପତ୍ରର ରସ

କମ୍ପା

ନେତୃତ୍ୱେ ଲଗିଛୁ ଘୁଣ ଗାନ୍ଧୀ ନାମେ ଗୃଲେ ହ୍ୱଂସାଗୋଳ
ଖଦଡ଼ର ଅର୍ଥ ହୁଏ ଖାଇଦିଅ ଡରନା କାହାକୁ
ମନ୍ଦିର ଦେବତା ଭାଙ୍ଗ ଗଢ଼ା ହୁଏ ପଣ୍ୟଶାଳା କେତେ
ଗଳାରେ ଦେଲେଣି ଛୁରୀ ବାଛୁଥିଲ ଦାୟାଦ ଯାହାକୁ
ଯୋଜନା ନାମରେ ହୁଏ ଯାତନାର ବିଷମଞ୍ଜି ବୁଣା
ଦେଶସେବା ନାମେ ଗୃଲେ ଦୁର୍ନୀତିର ସୁଷ୍ଠୁ ଅଭିନୟ
ସାହିତ୍ୟ ନାମରେ ଗୃଲେ ଗ୍ରନ୍ଥମାନ ନିଷ୍ଫଳ ତର୍ଜମା
ମାନବିକତା ଯେ ହାଜେ ପଶୁତ୍ୱର ଘଟଇ ବିଜୟ

୧ ) ମୋଟ ଉପରେ ଏହି ପରିବେଶରେ ରୋମାଣ୍ଟିକତାର ସ୍ଥାନ ନାହିଁ ଓ

୨ ) ଜୀବନର ମୂଲ୍ୟବୋଧ ପରିବର୍ତ୍ତିତ ହୋଇଛି । ପ୍ରଥମତଃ କବି ଲେଖିଛନ୍ତି:

ମାଧବୀ ନିଶାର ମୃଦୁ କମ୍ପନ
ଲୋଡ଼ା ନାହିଁ ମୋର ପ୍ରିୟାରେ
ଶାଳ୍ମଳୀ ଫୁଲ ରକ୍ତର ରାଗ ଚଞ୍ଚଳ କରେ ହିଆରେ
ପ୍ରେମେ ମୋର ନାହିଁ ମଦିର ଆବେଗ
ନାହିଁ ଅବସାଦ ଗନ୍ଧ
ଆଗୋ ମୁଲାଏମ ସୁରେ ରଚିତ ନୁହେଁ ମୋ ଛନ୍ଦ !
କୋଟି ଜୀବନର ବିକ୍ଷତ ପ୍ରାଣ ସ୍ୱପ୍ନେ କରିଚି ଅନ୍ଧ ।

— ଲୋଡ଼ା ନାହିଁ, ଅଲୋଡ଼ା ଲୋଡ଼ା,

ଅନନ୍ତ ପଟ୍ଟନାୟକ

ତେଣୁ ଆଜ ମୂଲ୍ୟବୋଧର ପରିବର୍ତ୍ତନ ଘଟିଚି । ଆଜ ପୂର୍ବର ମୂଲ୍ୟବୋଧ ନାହିଁ । ଅତୀତର ନୈତିକତା, ସତତା; ପ୍ରେମ ଓ ଆଧ୍ୟାତ୍ମିକତା ମଧ୍ୟ ନାହିଁ ।



# ଗୋଦାବରୀଶଙ୍କ କବିତାରେ ପ୍ରଗତିବାଦ

ବିଦେଶୀ ଶାସନ, ଜମିଦାରଙ୍କ ଅତ୍ୟାଚାରର ରଥଚକ୍ର ତଳେ ନିଷ୍ପେଷିତ ହୋଇଥିଲେ ହେଁ ସତ୍ୟବାଦୀ ଯୁଗର କବିଗଣଙ୍କ ଲେଖାରେ ପ୍ରଗତିବାଦର ସାମଗ୍ରିକ ସ୍ଫୁରଣ ହୋଇଥିଲା । ଅଳ୍ପଦିନ ତଳେ ହୋଇଥିବା ରୁଷୀୟ ବିପ୍ଳବର ବାଣୀ ଏବଂ ପ୍ରଗତିବାଦ ଅନ୍ୟାନ୍ୟ ଦେଶକୁ ଧୀରେ ଧୀରେ ପ୍ରବେଶ କରୁଥିଲା । ରାଜନୈତିକ ସ୍ୱାଧୀନତା ହାସଲକରିବା ମୁଖ୍ୟ ଉଦ୍ଦେଶ୍ୟ ଥିଲେ ମଧ୍ୟ ଅଗଣିତ ଦରିଦ୍ର ଜନତାର ଦୈନ୍ୟ ପ୍ରତି କୋମଳ କାରୁଣ୍ୟ ବହନକରି ସତ୍ୟବାଦୀ ସାହିତ୍ୟ ମୂର୍ତ୍ତିମନ୍ତ ହୋଇଥିଲା । ବିଶ୍ୱଯୁଦ୍ଧର ବିଭୀଷିକାରେ ସମାଜ ପ୍ରତି ଇଲିଅଟ କହିଥିଲେ ।

"This hollow land, This cactus land."

ସେହିପରି ବହ୍ନିଜ୍ୱଳିତ ମନ୍ୱନ୍ତରର ବିଭୀଷିକାରେ ଗୋପବନ୍ଧୁ ମଧ୍ୟ ଗାଁ ଗଣ୍ଡାକୁ ଶ୍ମଶାନ ରୂପେ ଦେଖିଥିଲେ । ଦୁଇଟି ଭିନ୍ନ ପରିବେଶର କବିଙ୍କର ଏଇ ସମାନ ଭାବଧାରାରୁ ଓଡ଼ିଆ ସାହିତ୍ୟର ପ୍ରଗତି ଲକ୍ଷ୍ୟ କରି ହୁଏ । ଗୋପବନ୍ଧୁ "ପ୍ରଜା ଲାଗି ରାଜା, ପ୍ରଜା ଲାଗି ରାଜନୀତି, ପ୍ରଜା ଇଚ୍ଛା ଅଭିମତ ରାଜ୍ୟ ମୂଳଭିତ୍ତି" କହିଲା ବେଳେ ଏଇ ସବୁ ଅନ୍ୟ ସବୁ ସତ୍ୟବାଦୀଯୁଗର କବିଙ୍କ ଲେଖାରେ ରୂପ ପାଇଥିଲା । ଅନ୍ୟାନ୍ୟ ସତ୍ୟବାଦୀ ଯୁଗର ସାହିତ୍ୟ-ସାଧକଙ୍କ ପରି ଗୋଦାବରୀଶ,

ତାଙ୍କର ବିପୁଳ ରଚନା, ଅସୀମ ସାଧନା ଓ ଚରମ ସିଦ୍ଧିରେ ସମାଜର ଅନ୍ଧ କୁସଂସ୍କାର ପୁରାତନ ସ୍ଥବିର ଶବ୍ଦାଧାରା ବିରୁଦ୍ଧରେ ବିପ୍ଳବ କରିଥିଲେ । କ୍ଷୟିଷ୍ଣୁ ସମାଜ ବ୍ୟବସ୍ଥା ବିରୁଦ୍ଧରେ ଗମ୍ଭୀର ସ୍ୱର ଉତ୍ତୋଳନ କରିଥିଲେ । ବାଲ୍ୟବିବାହ, ବିଧବା ବିବାହ ନିଷେଧ, ନାରୀ ଶିକ୍ଷାର ବିରୋଧ ଆଦି ବିରୁଦ୍ଧରେ ଲେଖନୀ ଗୁଳନା କରି ଜୀବନର ପରିବର୍ତ୍ତିତ ମୂଲ୍ୟବୋଧ ପ୍ରତି ସମାଜକୁ ସଚେତନ କରିଥିଲେ । ରାଜନୈତିକ ନେତୃବର୍ଗଙ୍କର ପ୍ରପଞ୍ଚ, ଇଂଜିନିଅର କଣ୍ଟ୍ରାକ୍‌ଟରଙ୍କ ପ୍ରବଞ୍ଚନା (ପୋଲ ଉନ୍ମୋଚନ) ଆଦିକୁ ବ୍ୟଙ୍ଗ କରିଥିଲେ । ଅପର ପକ୍ଷରେ ସକଳ ପ୍ରକାର କର୍ମ ପ୍ରତି ଶିକ୍ଷିତ ଯୁବକ ଯୁବତୀଙ୍କର ମମତା ସୃଷ୍ଟି କରି କର୍ମ କରିବାକୁ ପ୍ରେରଣା ଯୋଗାଇବା ପାଇଁ ସେ ସୁନ୍ଦର ଚିତ୍ର ଆଙ୍କିଥିଲେ । ଗଳ୍ପ ମାନଙ୍କରେ ପୁରାତନ ସମାଜ କେଉଁଠି ଭୁଷୁଡ଼ି ପଡୁଛି ତ କେଉଁଠି ସମାଜ ପଙ୍ଗୁ ଅଥର୍ବ ହୋଇ ଯାଇଛି ।

କବିତା ମାନଙ୍କରେ ଦେଶାତ୍ମବୋଧର ଉଦ୍‌ବୋଧନ ସହ ପ୍ରଗତିବାଦୀ ଦର୍ଶନର ଗ୍ରୁପ ପରିଲକ୍ଷିତ । ଜାତିର ଇତିହାସ ଗାନକରି ଜନତାକୁ ବ୍ରିଟିଶ ସାମ୍ରାଜ୍ୟବାଦୀଙ୍କ ବିରୁଦ୍ଧରେ ଯେପରି ଉଦ୍‌ବୁଦ୍ଧ କରିଛନ୍ତି, ଠିକ୍ ସେହିପରି ସ୍ୱାଧୀନତା ଉତ୍ତର ପୁଞ୍ଜିବାଦୀ ସଭ୍ୟତାର ଦୋଷ ଦୁର୍ବଳତା ଧରେଇ ଦେଇଛନ୍ତି ।

'ଦାନ' କବିତାଟିରେ ଜନୈକ ବ୍ୟକ୍ତି ଅର୍ଥାଭାବରୁ ପାଚିଲା ଆମ୍ବ ନ କିଣି କଞ୍ଚା ଖଟା ଆମ୍ବ କିଣିବାରୁ ଗୋଟିଏ ପିଲା ଗୁରି ପଇସାର ଆମ୍ବ ଅଯାଚିତ ଭାବରେ ଦାନ କରିଛି । କବିଙ୍କ ଭାଷାରେ : ଜଗତ ଅନନ୍ତକାପ୍ୟେ ଖେଳେ ଯେ ପୀୟୂଷ, ଦେଲିତ ଛୁଆଇ ତହିଁ ଏ ବିଷ ପରଶ । ଗୁରି ପଇସାର ଆମ୍ବ ଦେଲି ଏ ଯେ କିଣି, ଧାନହୀନ ଗୁରିଯୁଗ କଲି ଯେ ମେଦିନୀ ?

କବି କହିଛନ୍ତି ଯେ, ଦରିଦ୍ର ତାର ଦାରିଦ୍ର୍ୟ ପ୍ରତି ସଚେତନ ନ ହୋଇ ସନ୍ତୁଷ୍ଟ । ଦେଶର ନାଗରିକ ହିସାବରେ ଦେଶର ଉତ୍ପାଦିତ ପଦାର୍ଥ କିଣିବା ପାଇଁ ଅସମର୍ଥ ହୋଇ ମଧ୍ୟ ସେ ଅଥର୍ବ, ସମାଜ ବିରୁଦ୍ଧରେ ତାର କିଛି ଅଭିଯୋଗ ନାହିଁ । ସାମାନ୍ୟତମ ଲାଭରେ ସେ ସନ୍ତୁଷ୍ଟ । ଠିକ୍ ପରକ୍ଷଣରେ ପିଲାଟିର ଦାନ ତାକୁ ନିଜର ଦୟନୀୟ ଅବସ୍ଥା ପ୍ରତି ସଚେତନ କରିଛି । ଛୋଟିଆ ପିଲାଟିର ଆର୍ଥିକ ଶକ୍ତି ନିକଟରେ ତାର ପୁରୁଷକାରର ପରାଜୟ ଲାଗି ସେ ଦୁଃଖ କରିଛି । ସକଳ ପ୍ରାକୃତିକ ସୁଖସୁବିଧା ଅଗଣିତ ମାନବଙ୍କ ନିମିତ୍ତ ସମଭାବରେ ଉଦ୍ଦିଷ୍ଟ । ପ୍ରକୃତିର ଏଇ ସମ-ବଣ୍ଟନ ନୀତି ପାଇଁ ଭାରତୀୟ ଆର୍ଯ୍ୟ ଋଷି ଗାଇଥିଲେ—

"ମଧୁ ବାତାଃ ଋତାୟତେ
ମଧୁ କ୍ଷରନ୍ତି ସିନ୍ଧବଃ
ମାଧ୍ୱୀର୍ନଃ ସନ୍ତ୍ୱୋଷଧୀ
ମଧୁମତ୍ ପାର୍ଥିବଂ ରଜଃ
ମଧୁଦ୍ୟୌରସ୍ତୁନଃ ପିତାଃ ଇତ୍ୟାଦି ।

ରୁଷୋଙ୍କ ଷ୍ଟେଟ ଅଫ ନେଚର ସୁଖଶାନ୍ତିର ନିଳୟ ଥିଲା । ମାତ୍ର ଅର୍ଥ-କୈନ୍ଦ୍ରିକ ସମାଜରେ ଏବଂବିଧ ଦାନ ନିଜର ଅର୍ଥଶକ୍ତି ଦେଖାଇବା ବୋଲି ମନେ କରି କବି ତାହାଙ୍କୁ ବିଷ ବୋଲି ବର୍ଣ୍ଣନା କରିଛନ୍ତି ।

ଅର୍ଥକୈନ୍ଦ୍ରିକ ସମାଜ ପ୍ରତି କବିଙ୍କ ଘୃଣା 'ଭିକାରି' କବିତାରୁ ମିଳେ –

"ଦୁଃଖୀ ପାଇଁ ଧନେ କାହାରି ଜଗତେ
ନ କାନ୍ଦେ ଅନ୍ତର ତଳେ,
ଯାହାର ଯେତିକ ଧନ ମାନ ଶିଖି
ପୂଜା ତାର ମହୀ ତଳେ ।"

ଧନୀଙ୍କର ଏ ସମାଜରେ ସମ୍ମାନ ରହିଛି । ମନୁଷ୍ୟ ମନୁଷ୍ୟ ମଧ୍ୟରେ ସ୍ନେହ ନାହିଁ, ପ୍ରୀତି ନାହିଁ, ଅଥଚ ଅଛି ଏକ ପରିଦୃଶ୍ୟମାନ ବୈରିତା । ସେ ବୈରିତା ପ୍ରକାଶ ପାଇଛି କେଉଁଠି ଶୋଷଣରେ ତ କେଉଁଠି ଅଯାଚିତ ଦାନରେ ।



# ସାହିତ୍ୟିକର ସାମାଜିକ ଦାୟିତ୍ୱବୋଧ

ସେଦିନ ଏକ ସ୍ଥାନୀୟ ସଭାରେ ଜନୈକ ବକ୍ତା ତାଙ୍କ ଭାଷଣ ପ୍ରସଙ୍ଗରେ କହିଥିଲେ ଯେ, ସାହିତ୍ୟିକର ସାମାଜିକ ଦାୟିତ୍ୱ ନାହିଁ, ସେ ତା ନିଜ ଦୃଷ୍ଟି-କୋଣରୁ ଲେଖିବ ଓ ସେ ସମ୍ପର୍କରେ କେହି କିଛି କହି ପାରିବେ ନାହିଁ, ବିଶେଷ କରି ସେ ଲେଖିଥିବା ବସ୍ତୁ ସାହିତ୍ୟ କୃତି ସମ୍ପର୍କରେ ଯେତେବେଳେ କେହି ପାଠକ ଖଣ୍ଡେ ହେଲେ ପତ୍ର ତାଙ୍କୁ ଲେଖି ନାହାନ୍ତି ବା ଭିନ୍ନ ଅର୍ଥରେ କହିଲେ ତାଙ୍କ ସାଧନାକୁ ପ୍ରଶଂସା ବୋଲି ଚିହ୍ନି ନପାରିଛନ୍ତି । ଉକ୍ତ ବକ୍ତା ବନ୍ଧୁଙ୍କ ମତରେ ସେ ପରମ୍ପରାକୁ ରକ୍ଷା କରିବେ—ଓଡ଼ିଶାର ପରମ୍ପରାକୁ, ତେଣୁ ସେ ପରିପ୍ରେକ୍ଷୀରେ ତାଙ୍କର ସାମାଜିକ ଦାୟିତ୍ୱ ନାହିଁ ।

ଆଜି ଦିନେ ଏକ ପତ୍ରିକାର ସମ୍ପାଦକୀୟ ଅଗ୍ରଲେଖାରେ ଜଣେ ସମ୍ପାଦକ ବନ୍ଧୁ ଏଇ ବିଷୟଟି ସମ୍ପର୍କରେ କିଛି ଲେଖିଥିଲେ ଓ ତାଙ୍କର ଉକ୍ତ ମତ ଶେଷ, ସାର୍ବଜନୀନ ଓ ସତ୍ୟ କି ବୋଲି ବହୁ ପ୍ରଶ୍ନର ଶରବ୍ୟ ହୋଇଛି ଏ ଲେଖକ । ଉକ୍ତ ଅଗ୍ରଲେଖାରେ ଲେଖକର ସାମାଜିକ ଦାୟିତ୍ୱ ନାହିଁ ବୋଲି କୁହାଯାଇଛି । ବରଂ "ମୁକ୍ତ ଜୀବ" 'ସମୟର ସୀମା ବାହାରେ' ଆଜି କେତୋଟି କାନକୁ ଭଲ ଶୁଭୁଥିବା ଅପ୍ରାସଙ୍ଗିକ ଅବାନ୍ତର କଥାର ଉଲ୍ଲେଖ କରି ପାଠକକୁ ବିଭ୍ରାନ୍ତ କରିବାର ଅପଚେଷ୍ଟା କରାଯାଇଛି । ଏହିଠାରୁହିଁ ଏ ପ୍ରବନ୍ଧର ଅବତାରଣା ।

ଉଦାହରଣ ଦେବାର ଅନ୍ୟତମ ଅଭିପ୍ରାୟ ହେଉଛି ଯେ, ସାମାଜିକ ଦାୟିତ୍ୱବୋଧ ସମ୍ପର୍କରେ ଉଲ୍ଲିଖିତ ବ୍ୟକ୍ତିମାନଙ୍କ ପରି କେତେକଙ୍କର ଭୁଲ ଧାରଣା ଅଛି ବା କେତେକଙ୍କୁ ଏଭଳି ଭୁଲ ଧାରଣା ବିଭିନ୍ନ କ୍ଷେତ୍ରରେ ଦେବାର ପ୍ରଚେଷ୍ଟା କରାଯାଇଛି ।

ସାମାଜିକ ଦାୟିତ୍ୱ କହିଲେ ବ୍ୟକ୍ତିର—ସେ ଅଧ୍ୟାପକ ହେଉ ବା ସାହିତ୍ୟିକ ହେଉ, ବ୍ୟବସ୍ଥାପକ ହେଉ ବା ମୂଲିଆ ମଜୁରିଆ ହେଉ, ଯାହା ହେଉ ନା କାହିଁକି ସମାଜ ପ୍ରତି କର୍ତ୍ତବ୍ୟକୁ ବୁଝାଇ ଥାଏ । ବୃତ୍ତି ବା କର୍ମର ଭିନ୍ନତାରେ ବହୁ ଶ୍ରେଣୀର ବ୍ୟକ୍ତିଙ୍କୁ ନେଇ ସମାଜ ଗଠିତ ଏବଂ ସମସ୍ତ ବୃତ୍ତି ସମାଜ ପାଇଁ ଉଦ୍ଦିଷ୍ଟ । ପ୍ରଥମେ ବ୍ୟକ୍ତି, ପରେ ଅଧ୍ୟାପକ ବା ସାହିତ୍ୟିକ ଓ ଏକ 'ବ୍ୟକ୍ତି' ସ୍ତରରେ ଆମେ ସମସ୍ତେ ମୂଳରୁ ଶେଷ ପର୍ଯ୍ୟନ୍ତ ସାମାଜିକ ।

ଆମର ସମାଜ ଏକ ସାମାଜିକ ଚୁକ୍ତିର ପରିଣତି, ପାରସ୍ପରିକ ବୁଝାମଣା, ମିଳାମିଶାକୁ ଭିତ୍ତିକରି ଆମେ ସମସ୍ତେ ସମାଜ ଗଠନ କରିଛୁ ଓ ତାହା ବ୍ୟକ୍ତିଗତ ସୁଖ, ସମୃଦ୍ଧି ଆଦି ନିମିତ୍ତ ଅଭିପ୍ରେତ । ତେଣୁ ସମାଜର ଉନ୍ନତି ନିମିତ୍ତ ସମସ୍ତେ ନିଜ ନିଜ ସାମାଜିକ ଦାୟିତ୍ୱ ତୁଲାଇବାକୁ ବାଧ୍ୟ । ସମାଜର ନିୟମ ଦ୍ୱାରା ଆମେ ନିୟନ୍ତ୍ରିତ । ସମାଜ ବିରୋଧୀ କୌଣସି କାର୍ଯ୍ୟ କରିବାକୁ ସମାଜ ପ୍ରଶ୍ରୟ ଦିଏନାହିଁ, କଲେ ଦଣ୍ଡ ବିଧାନ କରେ ।

ଏ ପରିପ୍ରେକ୍ଷୀରେ ସାହିତ୍ୟିକର ପ୍ରଥମ ଦାୟିତ୍ୱ ହେଉଛି ସାହିତ୍ୟ ସୃଷ୍ଟି କରିବା ଓ ଏ ସାହିତ୍ୟ ସାମୂହିକ ମଙ୍ଗଳ ନିମିତ୍ତ ଉଦ୍ଦିଷ୍ଟ ହେବ ହିଁ ହେବ ।— ଏହାହିଁ ସାହିତ୍ୟିକର ସାମାଜିକ ଦାୟିତ୍ୱ ।

ଏକଥା ସର୍ବବାଦୀ ସମ୍ମତ ଯେ, ଆଜିର ସମାଜରେ ଅର୍ଥନୀତି ଓ ରାଜନୀତିର ପ୍ରଭାବ ପ୍ରଚୁର, ପ୍ରାଧାନ୍ୟ ଯଥେଷ୍ଟ ବେଶୀ । ଆଜି ସମାଜ ଅନେକ କ୍ଷେତ୍ରରେ ଗୋଟିଏ ଗୋଟିଏ ଦେଶରେ ପରିଣତ ଓ ଯେଉଁ ଦେଶର କାର୍ଯ୍ୟ ବେଶୀ ପରିମାଣରେ ସାମାଜିକ । ବ୍ୟକ୍ତି ନିଜର ସମସ୍ତ କ୍ଷମତାକୁ ରାଷ୍ଟ୍ରହାତରେ ସମର୍ପି ସାରିଲା ପରେ ଏ ସମାଜ ଗଠିତ । ତେଣୁ ବ୍ୟକ୍ତିଗତ ସ୍ୱାଧୀନତାର ପରିସର ଏକାନ୍ତ ସୀମିତ । ରାଷ୍ଟ୍ର ବିରୁଦ୍ଧରେ ଯିବାର ଅବକାଶ ନାହିଁ । ଆଗୁଲି ବସିଛି ବିଭିନ୍ନ ଆଇନ । ଅନ୍ୟ କଥାରେ କହିଲେ, ରାଷ୍ଟ୍ରର ମଙ୍ଗଳ ନିମିତ୍ତ ରାଷ୍ଟ୍ରର ନୀତିରେ ଆସ୍ଥା ସ୍ଥାପନ କଲାବେଳେ ବ୍ୟକ୍ତିଗତ ସ୍ୱାଧୀନତା କ୍ଷୁଣ୍ଣ ହେବ ହିଁ ହେବ । ବ୍ୟକ୍ତିଗତ ରୁଚି,

ଇଚ୍ଛା, ଅଭିମତକୁ ବଳି ଦେବାକୁ ପଡ଼ିବ ହିଁ ପଡ଼ିବ । ବ୍ୟକ୍ତିଗତ ସ୍ୱାଧୀନତା ରାଷ୍ଟ୍ରର ସ୍ୱାର୍ଥ ବିରୁଦ୍ଧରେ ଗଲେ ଉଚ୍ଛୃଙ୍ଖଳତାରେ ପରିଣତ ହୁଏ ଯାହା କଦାପି ବରଦାସ୍ତ କରାନଯିବା ଉଚିତ ।

କିନ୍ତୁ ବ୍ୟକ୍ତିଗତ ଦୃଷ୍ଟିକୋଣ ସାମାଜିକ ଦାୟିତ୍ୱବୋଧର ପରିପନ୍ଥୀ ନୁହେଁ । ସମାଜ ବ୍ୟବସ୍ଥାକୁ ନିଜ ଦୃଷ୍ଟିକୋଣରୁ ଅପାଙ୍କ୍ତେୟ ମନେ କରି ଆଦିଲକଜାଣ୍ଡାର ସୋଲ୍‌ଜେନିସିନ, ଗୋଦାବରୀଶ ମହାପାତ୍ର ବା 'ପ୍ରୁରପୋକ' ପତ୍ରିକାର ସମ୍ପାଦକ ଚନ୍ଦ୍ରମଣି ଚଣ୍ଡୀ ଆଦି ସମସ୍ତେ ଲେଖିଛନ୍ତି । କିନ୍ତୁ ସମାଜ ବିରୋଧୀ ବୋଲି ସାବ୍ୟସ୍ତ ହୋଇ ପ୍ରଥମ ଲେଖକଙ୍କୁ ସମାଜ ଛାଡ଼ିବାକୁ ପଡିଛି । ସେହି ନ୍ୟାୟରେ ଗ୍ୱେର, ଡ଼କାଏତ, ନକସଲପନ୍ଥୀ ମାନଙ୍କ ପରି ଅନେକ ସାହି-ତ୍ୟିକଙ୍କୁ ଆଇନର ଦରବାରରେ ବିଗ୍ୱର କରାଯାଇଛି । ସେହିପରି ସମାଜକୁ ଗ୍ରହଣ କରି ନ ପାରି ବ୍ୟକ୍ତି ସମାଜ ତ୍ୟାଗ କରିଛି ଯେପରି ହରିଗୋବିନ୍ଦ ଖୁରାନା ସମାଜ ଛାଡ଼ିଲେ ।

ସାମାଜିକ ଦାୟିତ୍ୱ ତେଣୁ ସାହିତ୍ୟିକର ନିର୍ଦ୍ଦିଷ୍ଟ ଭାବରେ ଅଛି । ସମାଜ ସଚେତନ ହୋଇ ରବି ସିଂ, ଗୋଦାବରୀଶ ମହାପାତ୍ର, 'ପାଣ୍ଡୁଲିପି'ର ସଚ୍ଚି ରାଉତରାୟ ଯେପରି ସାହିତ୍ୟିକ, ଠିକ୍ ସେହିପରି 'ରକ୍ତଜବା ହ୍ୱାମାହ୍ୱିର' ରାଜକିଶୋର ରାୟ, ପରିବାର ନିୟନ୍ତ୍ରଣ ପାଇଁ ଲେଖିଥିବା ବିଶ୍ୱନାଥ କର ମଧ୍ୟ ସାହିତ୍ୟିକ ଓ ସାମାଜିକ ଦାୟିତ୍ୱକୁ ସ୍ୱୀକାର କରନ୍ତି । କିନ୍ତୁ ଅଶ୍ଳୀଳ ସାହିତ୍ୟ ଲେଖି ପଣ୍ଡିତ ହୋଇଥିବା ସାହିତ୍ୟିକଙ୍କ ପରି ଯେଉଁମାନେ ସାହିତ୍ୟ ସୃଷ୍ଟି ନାଁରେ ଜନମତକୁ ବିଭ୍ରାନ୍ତ କରନ୍ତି, ଦେଶର ଅମଙ୍ଗଳ କରନ୍ତି ସେମାନେ ସାମାଜିକ ଦାୟିତ୍ୱହୀନ, ସମାଜର ଶତ୍ରୁ ଓ ଅସାମାଜିକ ।

ଆଜିର ଯୁଗ ସମାଜ ସଚେତନତାର ଯୁଗ । ଦେଡଶବର୍ଷ ତଳର ଭାରତୀୟ ବା ୩୦୦ ବର୍ଷ ତଳର ପାଶ୍ଚାତ୍ୟ ସାହିତ୍ୟିକଙ୍କ ନିକଟରେ ଏହା ଲକ୍ଷ୍ୟ କରାଯାଇ ପାରୁ ନ ଥିଲା । କବିତାରେ ଚଳନ୍ତି ଶବ୍ଦ ପ୍ରବାଦାଦି ବ୍ୟବହାର କରିବା ଆଜିର କାବ୍ୟର ଲକ୍ଷଣ ହେଲେ ଲୋକକୁ ସ୍ୱୀକାର କରି 'ବାସ୍ତବବାଦ'କୁ ସମର୍ଥନ କରିବା ଏହାର ହେତୁ । ସେହିପରି 'ପ୍ରତିମା ନାୟକ, ଅଳକା ସାନ୍ୟାଲ, ଚନ୍ଦ୍ରା ବେହେରାଣୀ; କବିତା ରାଉତ' ଆଦିଙ୍କୁ ସାହିତ୍ୟର ପରିସରଭୁକ୍ତ କରିବା ବାସ୍ତବ-ବାଦୀ ସାହିତ୍ୟିକ ଶୈଳୀର ସମର୍ଥନ କରେ । ଆଜିକାଲି କବିର ଆତ୍ମସଂଘର୍ଷ ଓ ଚିନ୍ତନ କ୍ଳାନ୍ତି ତାର ସମାଜ ସଚେତନତାର ପରିଣତି ମାତ୍ର । ବାସ୍ତବତାକୁ ସତ୍ୟ ଓ

ପ୍ରଗତି ବୋଲି ଗ୍ରହଣ କରି ଯେତେବେଳେ ଆମ ସାହିତ୍ୟ ବାସ୍ତବବାଦୀ ବା ଅତି-ବାସ୍ତବବାଦୀ ସେତେବେଳେ ଦେଶକାଳର ଯଥାର୍ଥ ଚିତ୍ର କରିବାକୁ ସାହିତ୍ୟିକ ଆଗେଇ ଯାଏ ସାମାଜିକ ଦାୟିତ୍ୱବୋଧର ତାଗିଦରେ । କାବ୍ୟ କେବଳ ଯଶ, ଅର୍ଥ, ଆଦି ନିମିତ୍ତ ରଚିତ ନୁହେଁ; ବ୍ୟବହାର ପାଇଁ ମଧ୍ୟ । ତେଣୁ ସାହିତ୍ୟର ପ୍ରୟୋଜନ ଦିଗଟି ପ୍ରତି ସାହିତ୍ୟିକ ନିଃସ୍ପୃହ ରହିଲେ ଚଳିବ ନାହିଁ । ସାହିତ୍ୟ କଦାପି ବ୍ୟକ୍ତିଗତ ନୁହେଁ, ସମୂହ ପାଇଁ ଉଦ୍ଦିଷ୍ଟ । ସାହିତ୍ୟଟିର ବ୍ୟକ୍ତି ଚେତନା ସାର୍ବଜନୀନ ହୁଏ, ବିଶେଷ କରି ଆଜି ଯେତେବେଳେ ସାହିତ୍ୟ ଅନାୟାସ ଲବ୍ଧ । ତେଣୁ ସାହିତ୍ୟିକ ନିଜର ସାମାଜିକ ଦାୟିତ୍ୱକୁ ବୁଝି ସଂଯତ, ସଂହତ ନିର୍ଦ୍ଦିଷ୍ଟ ହେବ ଓ ସାହିତ୍ୟର ସାମାଜିକ ପ୍ରତିକ୍ରିୟା ଦିଗଟି ପ୍ରତି ସଚେତନ ହେବାକୁ ପଡ଼ିବ । ଯେଉଁଥି ପାଇଁ ମୁଁ ମୋ ଘର ଭିତରେ ମଡ଼ାଟାଏ ବେଶି ସମୟ ପକାଇ ପାରେନା ବା ମୋ'ଘରର ଦାଣ୍ଡପିଣ୍ଡାରେ ନଙ୍ଗଳା ହୋଇ ନାଚି ପାରେନା, ସେଇ ଚିନ୍ତାର ତାଡ଼ନାରେ ମୁଁ ସାମାଜିକ ଦାୟିତ୍ୱହୀନ ସାହିତ୍ୟ ମଧ୍ୟ ସୃଷ୍ଟି କରେନା । ତେଣୁ ଯେଉଁମାନେ ସାହିତ୍ୟିକର ସାମାଜିକ ଦାୟିତ୍ୱକୁ ଅସ୍ୱୀକାର କରନ୍ତି, ସେମାନଙ୍କୁ ମୋର ଅନୁରୋଧ—ସେମାନେ ତାଙ୍କ ସମସ୍ତ ବ୍ୟକ୍ତିଗତ ଭାବଭାବନାକୁ ନିର୍ଦ୍ଧିକ ଓ ଆଟୋପବିହୀନ ଭାବରେ ପ୍ରକାଶ କରି ନିଜ ସାମାଜିକ ସ୍ଥିତିକୁ ଟିକିଏ ପରଖି ନିଅନ୍ତେ କି ?



ଏହି ଲେଖକଙ୍କର ଅନ୍ୟାନ୍ୟ ପୁସ୍ତକ :—

* ପ୍ରତୀକ ଓ ପ୍ରତୀକବାଦ
* ବାସ୍ତବବାଦ
* କବି ସଚ୍ଚିଦାନନ୍ଦ ଓ ଗୁରୁପ୍ରସାଦ